# ଜ୍ୟୋତିଷସାର ।



ନାନାବିଧ ଜ୍ୟୋତିଷପ୍ରଶ୍ନମାନଙ୍କର

ପ୍ରଶ୍ନୋତ୍ତରନାମ୍ ବିଷୟ ସଙ୍କଳ

ଶ୍ରୀ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣଙ୍କ ଦ୍ୱାରା

ସଂଗୃହୀତ ଓ ଉତ୍କଳଭାଷାରେ ଅନୁବାଦିତ ହୋଇ

ଶ୍ରୀଯୁତ ବାବୁ ଗଜେନ୍ଦ୍ରଚନ୍ଦ୍ର ସିଂହଙ୍କ ଦ୍ୱାରା

କଟକ ଉତ୍କଳହିତୈଷିଣୀ ଯନ୍ତ୍ରରେ

ପ୍ରଥମବାର

ମୁଦ୍ରିତ ଓ ପ୍ରକାଶିତ ହୋଇଗଲା ।



CUTTACK,

Printed at the Orissa Patriot Press.

1878

ମୂଲ୍ୟ ୫୦ । ପୁରିଅଣାମାତ୍ର ।

# ବିଜ୍ଞାପନ ।

---

ଆମ୍ଭମାନଙ୍କ ଜନ୍ମଭୂମି ଏହି ଭାରତବର୍ଷରେ ଜ୍ୟୋତିଷର ଫଳକୁ ଋଷିଗଣ ମାନ୍ୟପୂର୍ବକ ଗ୍ରହଣ କରିଥିବାରୁ ପୂର୍ବକାଳରୁ ଅନେକାନେକ କୃତବିଦ୍ୟ ବ୍ୟକ୍ତିମାନେ ଜ୍ୟୋତିର୍ବିଦ୍ୟା ବିଷୟରେ ବହୁଳ ଗ୍ରନ୍ଥ କରି ଯାଇ ଅଛନ୍ତି ଯେ ତନ୍ତ୍ରର ସାର [illegible] ଶାସ୍ତ୍ରରେ ବ୍ୟବସାୟୀ କରି ଅନେକ ବ୍ୟକ୍ତି ଆଜି କାଲି ସର୍ବଜ୍ଞତା ପ୍ରକାଶ କରୁଅଛନ୍ତି । ବାସ୍ତବରେ ଜ୍ୟୋତିର୍ବିଦ୍ୟା ଓ ନକ୍ଷତ୍ରବିଦ୍ୟା । ଯେପରି ଆଜି କାଲି ପ୍ରତ୍ୟକ୍ଷ ଫଳ ଦର୍ଶାଇ ଅଛନ୍ତି ସେପରି ଅନ୍ୟାନ୍ୟ ବିଦ୍ୟାରେ ଦେଖାଯାଏ ନାହିଁ । ବର୍ତ୍ତମାନରେ ଏହି ଉତ୍କଳଦେଶୀୟ ବ୍ୟକ୍ତିମାନଙ୍କର ଜ୍ୟୋତିର୍ବିଦ୍ୟାରେ ତତ୍ପର ପରିଶ୍ରମ କରି କୃତବିଦ୍ୟ ହେବା ବିଷୟରେ ଅବହେଳା ଦେଖି ବାଳକମାନେ ସାମାନ୍ୟରୂପରେ ଥୋଡ଼ା ସମୟ ତାହା ଶିଖି ନ ପାରି ମାତୃଭାଷାରେ ଅଳ୍ପ ପରିଶ୍ରମଦ୍ୱାରା ଅବଶ୍ୟକୀୟ ଜ୍ୟୋତିର୍ବିଦ୍ୟା ବିଷୟକ ଜ୍ଞାନ ଲାଭ କରି ପାରିବା ନିମିତ୍ତ ଅନ୍ୟ ଅନେକାନେକ ଜ୍ୟୋତିର୍ବିଦମାନଙ୍କ ସହିତ ବିଚାର କରି ସାରି ଆମ୍ଭମାନଙ୍କ ଉତ୍କଳ ଭାଷାରେ ଅନୁବାଦ କଲାପରେ ଶ୍ରୀଯୁକ୍ତ ମାନ୍ୟବର ଦେଓ୍ୱାନ ହେଉଥିବା ବାବୁ ଗଣେଶପ୍ରସାଦ ସିଂହ ମହାଶୟଙ୍କ ନିକଟରେ ତାହା ଅର୍ପଣ କରିବାରୁ ସେ ମହାଶୟ ଉତ୍ସାହିତ ହୋଇ ଏହାକୁ ସର୍ବସାଧାରଣଙ୍କର ଉପକାର କରିବା କାରଣ ଆପଣା ହାତରୁ ବ୍ୟୟ ସ୍ୱୀକାର କରି ଛପା କରାଇଲେ । ଏହାକୁ ଏ ମହାଶୟ ଛପା କରାଇ ନ ଥିଲେ ବୋଧହୁଏ ଆମ୍ଭ ପରିଶ୍ରମ [illegible] ସଫଳ ହୋଇ ପାରି ନ ଥାନ୍ତା । ଯେହେତୁ ଆମ୍ଭ ହାତଲେଖା ଖଣ୍ଡେ ପୁସ୍ତକରୁ ଏଏ ଦ-

ପର ଏଥିର ବିବରଣ ଜାଣି ପାରନ୍ତା ଅଥବା ଦେଶ ବିଦେଶରେ ଏ ପୁସ୍ତକ କପର ପ୍ରକାଶ ହୁଅନ୍ତା । ଅତଏବ ଏ ବାବୁ ମହାଶୟ ଅମ୍ଭ ପରିଶ୍ରମର ଫଳକୁ ବିସ୍ତାରିତ କରାଇବାରୁ ତାଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କରି ପରମେଶ୍ୱରଙ୍କ ନିକଟରେ ତାଙ୍କର ଧନ୍ୟବାଦ ପ୍ରକାଶ କରୁଅଛୁଁ । ଅଉ ମୁକ୍ତକଣ୍ଠରେ ଏହା ସ୍ୱୀକାର କରୁଅଛୁଁ ଯେ ଏ ପୁସ୍ତକ ରଚନା କରିବା ସମୟରେ ଶ୍ରୀ ଲୋକନାଥମିଶ୍ର ମହାଶୟ ଅମ୍ଭଙ୍କୁ ଅନେକ ବହୁମୂଲ୍ୟ ସାହାଯ୍ୟ ପ୍ରଦାନ କରିବାରୁ ତାଙ୍କ ନିକଟରେ ଅମ୍ଭେ ଏବିଷୟରେ ଋଣୀ ଅଛୁଁ । ଏ ପୁସ୍ତକରେ ସପ୍ତାଙ୍ଗ, ଗ୍ରହମାନଙ୍କର, ଗଣ୍ଡମିଶ୍ର ବିଚାର, ଚୂଡ଼ାକରଣାଦି ବ୍ରତ, ବିବାହ ଓ ଉତ୍କଣ୍ଠକଯାତ୍ରାଦି, ଏବଂ କୋଷ୍ଠି ଫଳ ଇତ୍ୟାଦି ଆବଶ୍ୟକୀୟ ବିଷୟ ସକଳର ବିଚାର, ପ୍ରକାଶ କରା ଯାଇଅଛି । ବାଳକମାନେ ଯେବେ ମନୋଯୋଗପୂର୍ବକ ଏହି ପୁସ୍ତକ ଖଣ୍ଡିକ ଆମୂଳ କରି ସମସ୍ତ ପଢ଼ି କଣ୍ଠସ୍ଥ କରି ରଖିବେ ତେବେ ଗ୍ରାମ୍ୟ ସାଧାରଣରେ ଜଣେ ଜ୍ୟୋତିର୍ବିଦ ହୋଇ ଗଣ୍ୟ ହୋଇ ପାରିବେ ଏଥିରେ ସନ୍ଦେହ ନାହିଁ । ପରିଶେଷରେ ପାଠକମାନଙ୍କ ନିକଟରେ ଆମ୍ଭର ପ୍ରାର୍ଥନା ଏହି ଯେ ଏହି ପୁସ୍ତକଗତ ବିଷୟମାନଙ୍କରେ ଯେବେ କେଉଁ କୌଣସିଠାରେ ଭ୍ରମ ପ୍ରମାଦ ଦେଖାଯିବ ତେବେ ତାହା ଅନୁଗ୍ରହପୂର୍ବକ ଅମ୍ଭଙ୍କୁ ଜଣାଇଲେ ଅମ୍ଭେ ଅତି ବାଧିତ ହୋଇ ପୁନଃ ସଂସ୍କରଣ ସମୟରେ ତାହା ସଂଶୋଧନ କରିଦେବୁଁ । ଇତି ।—

---

# ସୂଚିପତ୍ର ।



---

# ଜ୍ୟୋତିଷସାର ।



## ପ୍ରଥମଖଣ୍ଡ ।

ରାଗ ।— ଦେଶାକ୍ଷ ।

ହରଙ୍କ ବନ୍ଦନ ଗିରିଜାନାଥ । ପଞ୍ଚମୁଖ ତ୍ରିନେତ୍ର ଶୋଭିତ ।
ଶିରେ ଜଟାଭାର କି ମନୋହର । କରନ୍ତି ଗଙ୍ଗା ତହିଁରେ ବିହାର ।
ଶେଖରେ ଶୋଭି ରଜନୀଧବ । ଭକ୍ତିଭାବେ ବନ୍ଦ ଶ୍ରୀ ସଦାଶିବ ୧ ॥

ଅହେ ଗୌରସୁତା-କାନ୍ତ ଶିବେନ୍ଦ୍ର । ପୂରାଅ ମୋ ମନୋବାଞ୍ଛା ତୁରିତ ।
ଶିଶୁଙ୍କ ହିତରେ ଜ୍ୟୋତିଷସାର । କରିବ ବଖାଣି ଦେଶଭାଷାର ।
ମୋଠାରେ ହୁଅ ପ୍ରସନ୍ନ ଚିତ୍ତ । ତବ ପାଦେ ସେବା ମୋର ନିରତ ॥

ଶୁଣ ସୁବୁଦ୍ଧି ପଣ୍ଡିତନିକର, । ଏ ବିଷୟରେ ମୋର ଦୋଷ ନ ଧର ।
ଅଳପ ପରିଶ୍ରମରେ ବାଳକେ । ଜାଣିବେ ଜ୍ୟୋତିଷଫଳକୁ ଠିକେ ।
ଏହା ମୋ ମନେ ହେଉଁ ଅଭିଳାଷ । କରେଁ ଛନ୍ଦ ଭାବ ପ୍ରକାଶ ।୩॥

ଶୁଣ ସୁଚତୁର ବାଳକଗଣ । ପ୍ରଥମେ ସଂଜ୍ଞା କରୁଛି ବଖାଣ ।
ତହିଁ ଉତ୍ତାରେ ଶତ୍ରୁ ମିତ୍ର ବିଚାର । ତତ୍ପରେ ଲଗ୍ନବର୍ଗର ସ୍ଫୁଟ ।
ତା ପରେ ଚକ୍ରପାତ ବର୍ଗର । ଦଶା ଅନ୍ତର୍ଦଶା ପାଞ୍ଚପ୍ରକାର ।୪॥

ଏ ସବୁ ଉତ୍ତାରେ ଯେ ଫଳାଫଳ । କହିବ ମୋହର ଯେତେକ ବଳ ।
ମେଷ ବୃଷ ମିଥୁନ ଯେ କର୍କଟ । ସିଂହ କନ୍ୟା ତୁଳା ବୃଶ୍ଚ ପ୍ରକଟ ।
କାର୍ମୁକ ମକର ଯେ ବଦତ । କୁମ୍ଭ ମୀନ ବାର ରାଶି ଉଦିତ ।୫॥

ମେଷ ବୃଶ୍ଚି ମଙ୍ଗଳର ଯେ ସ୍ଥାନ । ବୃଷ ତୁଳା ଶୁକ୍ର ଗ୍ରହର ସେନ ॥
ମିଥୁନ କନ୍ୟା ବଦଇ ବୁଧର । କର୍କଟ ଚନ୍ଦ୍ରର ସିଂହ ରବିର ।
ଧନୁର୍କ ମୀନ ବୃହସ୍ପତିର । ମକର କୁମ୍ଭକୁ ଜାଣ ଶନିର ।୬ ॥

ରାହୁର କନ୍ୟାସ୍ଥାନ ବୋଲି ଜାଣ । ମିଥୁନ ଉଚ୍ଚ ଅଟଇ ବଖାଣ ।
ରାହୁସପ୍ତମରେ କେତୁର ବାସ । ଏଣୁ କର ମୀନ ଗୃହ ପ୍ରକାଶ ।
ଏଣିକି ଲଗ୍ନାଦିର ଯେ ନାମ । କହିବା ବୁଝ ହେ ଶିଶୁଉତ୍ତମ ।୭ ॥

୧ ୨ ୩ ୪ ୫ ୬ ୭
ଦେହ ଦ୍ରବ୍ୟ ପରାକ୍ରମ ଯେ ସୁଖ । ସୁତ ଶତ୍ରୁ ଜାୟା ଅଦୃଷ୍ଟ ଲେଖ ।
୮ ୯ ୧୦ ୧୧ ୧୨
କରଣ ଧର୍ମ କର୍ମ ଲାଭ ବ୍ୟୟ । ଏ ବଟରେ ବାର ନାମ ଉଦୟ ।
ଲଗ୍ନରଠାରୁ ଗଣିଣ ଜାଣ । ଏକ ୨ କର କହିବା ଶୁଣ ।୮ ॥

ଅଙ୍ଗାଦି ବପୁ କଲ୍ୟ ତନୁ ମୂର୍ତ୍ତି । ଉଦୟ ଲଗ୍ନର ନାମ ବଖାଣନ୍ତି ।
କୁଟୁମ୍ବ କୋଷ ସ୍ୱ ଧନ ନୟନ । ଦ୍ୱିତୀୟର ଏହୁ ନାମଟି ସେନ ।
ସହଜ ଭ୍ରାତୃ ଦୁଶ୍ଚିକ୍ୟ ଏହି । ତୃତୀୟ ନାମ ବୁଝ ମନ ଦେଇ ।୯

ମାତୃ ପାତାଳ ଯେ ହିବୁକ ନୀର । ଗୃହ ସୁହୃଦ ବାହନ ଅବର ।
ଯାନି ଜଳ ନାମ ଯେତେକ ସେନ ବନ୍ଧୁ ତୁର୍ଯ୍ୟ ଏହୁ ଚତୁର୍ଥ ନାମ ।
ତନୁଜ ସୁତ ବୁଦ୍ଧି ବଚନ । ବିଦ୍ୟା ବର୍ଣ୍ଣବାଦ ପଞ୍ଚମ ସେନ ୧୦ ॥

ବଇର ଶତ୍ରୁ ରିପୁ ଆଦି କ୍ଷତ । ଷଷ୍ଠର ନାମ ଏ ବୁଝ ପଣ୍ଡିତ ।
ଯାମିତ୍ର ଅସ୍ତ ମଦନ କଳତ୍ର । ପୁନଶ୍ଚ ଦ୍ୟୂନ ଯେ ସପ୍ତମ ଉକ୍ତ ।
ମରଣ ଆୟୁ ଛିଦ୍ର ନିଧନ । ଯାମ୍ୟ ରନ୍ଧ୍ର ଲୟ ଅଷ୍ଟମନାମ । ୧୧

ଗୁରୁ ଧର୍ମ ଶୁଭ ଭାଗ୍ୟ ଯେ ତପ । ମୋକ୍ଷ ନବମ ନାମ ନୁହେ ଗୋପ୍ୟ
ଆଜ୍ଞା ମାନ ନଭ କର୍ମ ଗଗନ । ବ୍ୟୋମ ବ୍ୟାପାର ଦଶମକୁ ସେନ
ଆଗମ ଆପ୍ତି ବୃଦ୍ଧି ଯେ ପ୍ରାପ୍ତ । ଅନ୍ତ୍ୟମ ଏ ଏକାଦଶ ଉକ୍ତ ।୧୨ ॥

୧ ୪ ୭ ୧୦

ଙ୍ଗ ବ ଯ୍ ବୋଲ ଦ୍ୱାଦଶ ନାମ । ଲ ତ ସ ଦ କେନ୍ଦ୍ର ବୁଝ ଉତ୍ତମ
ଅଷ୍ଟ ଏକାଦଶ ପଞ୍ଚ ଦ୍ୱିତୀୟ । ଅପୋକ୍ଲିମ ବୋଲି ନାମ ଉଦୟ
ତୃତୀ ଷଷ୍ଠ ଯେନ ନବମ । ବାରପଣ ଫର ଜାଣ ଉତ୍ତମ । ୧୩

କଣ୍ଟକ ଚତୁଷ୍ଟୟ କେନ୍ଦ୍ର ନାମ । ସ୍ଥିକ ଯେ ଦ୍ୱାଦଶ ଷଷ୍ଠ ଅଷ୍ଟମ ।
ତ୍ରିକୋଣ ନବମ ପଞ୍ଚମ ଦୁଇ । ଏଥର ନଷ୍ଟ କହିଲୁଇ ।
ଏଣିକ ବୁଝ ଅନ୍ୟ ଚରିତ । ଗ୍ରହ ମିତ୍ରାମିତ୍ର କରେ ଉକତ । ୧୪

ରବି ମିତ୍ର ଚନ୍ଦ୍ର ଜୀବ ମଙ୍ଗଳ । ସମ ବୁଧଗ୍ରହ ଅଟେ କେବଳ ।
ଶନି ଶୁକ୍ର ଦୁହେଁ ଶତ୍ରୁ ଅଟନ୍ତି । ଚନ୍ଦ୍ର ମିତ୍ର ରବି ବୁଧ ବଖ୍ୟାତି ।
ଅନ୍ୟ ଯେ ସର୍ବେ ସମାନ ଜାଣି । ଚନ୍ଦ୍ରର ଶତ୍ରୁ କାହାକୁ ନ ଗଣି । ୧୫

ମଙ୍ଗଳ ମିତ୍ର ଜୀବ ଚନ୍ଦ୍ର ରବି । ବଇରୀ କେବଳ ବୁଧକୁ ଭାବି ।
ଶନି ଶୁକ୍ର ଚାରି ଅଟନ୍ତି ସମ । ବୁଧ ମିତ୍ର ଶୁକ୍ର ରବି ଜାଣିମ ।
ବଇରି ଚାରି ଅଟଇ ସୋମ । କୁଜ ଜୀବ ରବି ଏମାନେ ସମ । ୧୬

ଜୀବ ମିତ୍ର ରବି ଚନ୍ଦ୍ର ମଙ୍ଗଳ । ସମ ଶନିଗ୍ରହ ଅଟେ କେବଳ ।
ଶତ୍ରୁ ବୁଧ ଶୁକ୍ର ଗୁରୀ ପାଠକେ । ଶୁକ୍ର ମିତ୍ର ବୁଧ ଶନି ସେ ଠିକେ ।
ସମାନ ଜୀବ ଭୂମିନନ୍ଦନ । ସହଜ ଶତ୍ରୁ ରବି ଚନ୍ଦ୍ର ଯେନ । ୧୭

ଶନି ମିତ୍ର ଶୁକ୍ର ବୁଧ ଏ ଦୁଇ । ସମ ବୃହସ୍ପତି ଏକା ଅଟଇ ।
ରବି ଚନ୍ଦ୍ର ମଙ୍ଗଳ ଯେ ବଇରି । ଗ୍ରନ୍ଥ ମିତ୍ର ଶୁକ୍ର ଶନି ବାହାର ।
ବଇରି ରବି ଚନ୍ଦ୍ର ମଙ୍ଗଳ । ଅନ୍ୟମାନେ ସମ ଜାଣି ସକଳ । ୧୮

ସବୁ ଗ୍ରହ ଦୃଷ୍ଟି ଶୁଣ ସୁଜନ । ଦଶମ ତୃତୀୟେ ପାଦେ ଦର୍ଶନ ।
ପାଦ ଦୃଷ୍ଟି ନବ ପଞ୍ଚମରେ । ତ୍ରିପାଦ ଦୃଷ୍ଟି ଚତୁର ଅଠ ଘରେ ।
ସପ୍ତମେ ପୂର୍ଣ୍ଣ ଦୃଷ୍ଟି ପଡଇ । ସବୁ ଗ୍ରହଙ୍କର ଏ ରୀତି ହୋଇ । ୧୯

ଉଚ୍ଚ ଦଶଅଂଶ ମେଷରେ । ବୃଷରେ ଚନ୍ଦ୍ରମା ତିନିଅଂଶରେ ।

ଅଠାଇଶଅଂଶେ ଭୌମ ମକରେ । କନ୍ୟାରେ ବୁଧ ପନ୍ଦରଅଂଶରେ ।
କର୍କଟେ ପାଞ୍ଚଅଂଶରେ ଜୀବ । ଉଚ୍ଚ ଘଟନ୍ତି ବଗ୍ର ଭାବ ୨୦
ସତାଇଶ ଅଂଶେ ଶୁକ୍ର ମୀନରେ । କୋଡିଏଅଂଶରେ ଶନି ତୁଳରେ
ଉଚ୍ଚ ଏହିକମେ ସକଳ ଗ୍ରହ । ନୀଚ ଉଚ୍ଚସ୍ଥାନ ସପ୍ତମଗୃହ ।
କହୁଅଛି ବୁଝ ପାଠକବୃନ୍ଦ । କହେ ଭାଷାରେ କପିଳେଶ ନନ୍ଦ ।

---

## ଦ୍ୱିତୀୟ ଖଣ୍ଡ ।

### ଯାତ୍ରା ମଙ୍ଗଳ ।

ରବି ସୋମ ମଙ୍ଗଳ ଯେ ବୁଧ ଗୁରୁବାର ।
ଶୁକ୍ର ଶନି ସହିତରେ ଜାଣ ସାତବାର । ୧ ॥
ରବି ଶୁକ୍ରବାରେ ପଶ୍ଚିମକୁ ନ ଗମିବ ।
ଶନି ସୋମବାରେ ପୂର୍ବଦିଗେ ଶୂଳ ଭାବ । ୨ ॥
ବୁଧ ଗୁରୁ ଉତ୍ତରେ ଦକ୍ଷିଣେ ନୋହେ ଶୁଭ ।
ଶନି ମଙ୍ଗଳବାରରେ ଉତ୍ତରେ ନ ଯିବ । ୩ ॥
ରବିବାରେ ଷୋଳଦଣ୍ଡଠାରୁ ଯାତ୍ରା ଦଣ୍ଡ ।
ସୋମବାରେ ସାତଦଣ୍ଡଠାରୁ ଯାତ୍ରାଦଣ୍ଡ । ୪ ॥
ମଙ୍ଗଳେ କୋଡିଏଠାରୁ ଯାତ୍ରାଦଣ୍ଡ ଘେନ ।
ବୁଧେ ଅଠଦଣ୍ଡଠାରୁ ଯାତ୍ରାଦଣ୍ଡ ମାନ । ୫ ॥
ଗୁରୁବାରେ ତବଶଠାବରୁ ଦଣ୍ଡଯାତ୍ରା ।
ଶୁକ୍ରେ ବାରଦଣ୍ଡଠାରୁ ଯାତ୍ରା ଯେ ବିସ୍ତର । ୬ ॥

ଶନିବାରେ ଉଦୟ ଅନ୍ତରେ ଗୁରୁ ଶୁକ୍ର ।
ବାରବେଳା ଥିଲେ ଏଥି କୁହ ଦେ ବିଗ୍ରହ । ୭ ।
ରବିରେ ବପନ ଦେଲେ ଦୁଃଖ ଯେ ମିଳଇ ।
ସୋମ ବୁଧବାରେ ଗଲେ ମହା ସୁଖଦାୟୀ । ୮ ।
ମଙ୍ଗଳ ଶନିରେ ନଷ୍ଟ ମୃତ୍ୟୁର ପ୍ରକାଶ ।
ଗୁରୁବାରେ ମାନହାନି ଶୁକ୍ରେ ସୁଖ ନାଶ । ୯ ।
ତିଥିର ବିଚାର ଏବେ କହୁଥାଇଁ ସେନ ।
ପ୍ରତିପଦା ଦ୍ୱିତୀୟା ତୃତୀୟା ଜାଣ ମନ । ୧୦ ॥
ଚତୁର୍ଥୀ ପଞ୍ଚମୀ ଷଷ୍ଠୀ ସପ୍ତମୀ ଅଷ୍ଟମୀ ।
ନବମୀ ଦଶମୀ ଏକାଦଶୀ ଆଦ ସେନ । ୧୧ ॥
ଦ୍ୱାଦଶୀ ଯେ ତ୍ରୟୋଦଶୀ ଚତୁର୍ଦ୍ଦଶୀ ପୁଣ ।
କୃଷ୍ଣେ ଅମାବାସ୍ୟା ଶୁକ୍ଳେ ପୂର୍ଣ୍ଣିମାକୁ ଜାଣ । ୧୨ ॥
ପ୍ରତିପ ନବମୀରେ ଯୋଗିନୀ ପୂର୍ବେ ଥାଇ ।
ତୃତୀୟା ଏକାଦଶୀରେ ଅଗ୍ନି କୋଣେ ଯାଇ । ୧୩ ॥
ପଞ୍ଚମୀ ତ୍ରୟୋଦଶୀରେ ଦକ୍ଷିଣେ ବିହରେ ।
ଚତୁର୍ଥୀ ଦ୍ୱାଦଶୀରେ ଯେ ନୈର୍ଋତେ ସଞ୍ଚରେ । ୧୪ ॥
ଷଷ୍ଠୀ ଚତୁର୍ଦ୍ଦଶୀରେ ପଶ୍ଚିମ ଭାଗେ ଥାଇ ।
ସପ୍ତମୀ ପୌର୍ଣ୍ଣମୀରେ ବାୟୁବକୋଣେ ଯାଇ । ୧୫ ॥
ଦ୍ୱିତୀୟା ଦଶମୀରେ ଉତ୍ତରଦିଗେ ଯାଇ ।
ଅଷ୍ଟମୀ ଅମାବାସ୍ୟାରେ ଈଶାନେ ବସାଇ । ୧୬ ॥
ଯୋଗିନୀ ଦିଗମାନଙ୍କୁ ମୁଖ କରିଥାଇ ।
ସମ୍ମୁଖେ ପଡିଲେ ବେଗେ ଗୋଡ଼ାଇଁ ଧରଇ । ୧୭ ॥
ଯାତ୍ରା ସମୟେ ସମ୍ମୁଖେ ଦକ୍ଷିଣେ ଯୋଗିନୀ ।
ରହିଲେ ଅବଶ୍ୟ ମୃତ୍ୟୁ କରନ୍ତି ଭବାନୀ । ୧୮ ॥

ବାମଭାଗେ ରହିଲେ ମଙ୍ଗଳ ସମ୍ପାଦଇ ।
ପୃଷ୍ଠଭାଗେ ଥିଲେ ସର୍ବ ଅର୍ଥକୁ ଦହଇ । ୧୯ ।।
ସବୁ ତିଥି ଶେଷ ନବଦଣ୍ଡ ଅଟେ ଦୋଷ ।
ଯାତ୍ରା କଲେ ନଷ୍ଟେ ତହିଁ ସ୍ଥାନ ଯେ ଅଶେଷ । ୨୦ ।।
ପ୍ରତପ ଷଷ୍ଠୀ ଯେ ଏକାଦଶୀ ନନ୍ଦା ଜାଣ ।
ଦ୍ୱିତୀୟା ସପ୍ତମୀ ଦ୍ୱାଦଶୀ ଯେ ଭଦ୍ରା ପୁଣ । ୨୧ ।।
ତୃତୀୟା ଅଷ୍ଟମୀ ତ୍ରୟୋଦଶୀ ଜୟା ହୋଇ ।
ଚତୁର୍ଥୀ ନବମୀ ଚତୁର୍ଦ୍ଦଶୀ ରିକ୍ତା କହି । ୨୨ ।।
ପଞ୍ଚମୀ ଦଶମୀ ପୂର୍ଣ୍ଣିମୀ ବା ଅମାବାସ୍ୟା ।
ପୂର୍ଣ୍ଣା ତିଥି ଅଟେ ଏହୁ ଜ୍ୟୋତିଷର ଭାଷା । ୨୩ ।।
ଏକଦିନେ ତିନତିଥି ଯେବେ ହୋଏ ଭୋଗ ।
ତ୍ର୍ୟହ ସ୍ପର୍ଶ ତାକୁ କହି ନୋହେ କର୍ମ ଯୋଗ । ୨୪ ।।
ବିବାହ ଯାତ୍ରାଦି ଶୁଭକର୍ମ ନ କରିବ ।
ସ୍ନାନ ଦାନେ ସହସ୍ରୁଁ ଅଧିକ ଫଳ ଦେବ । ୨୫ ।।
ଧନୁ ମୀନେ ଦ୍ୱିତୀୟାକୁ ଦଗ୍ଧା ବୋଲି କହି ।
ବୃଷ କୁମ୍ଭେ ଦଗ୍ଧା ତିଥି ଚତୁର୍ଥୀ ବୋଲଇ । ୨୬ ।।
ମେଷ କର୍କଟରେ ଷଷ୍ଠୀ ତିଥି ଦଗ୍ଧା ହୋଏ ।
କନ୍ୟା ମିଥୁନରେ ଦଗ୍ଧା ଅଷ୍ଟମୀ ବୋଲଏ । ୨୭ ।।
ବିଛା ସିଂହେ ଏକାଦଶୀ ହୁଅଇ ଯେ ଦଗ୍ଧା ।
ମକର ତୁଳାରେ ଦ୍ୱାଦଶୀ ଯେ କରେ ବାଧା । ୨୮ ।।
ବିବାହେ ସ୍ତ୍ରୀ ବିଧବା ବାଣିଜ୍ୟେ ମୂଳକ୍ଷୟ ।
କୃଷିକର୍ମେ ଶସ୍ୟହାନି ଯୁଦ୍ଧେ ପରାଜୟ । ୨୯ ।।
ଯାତ୍ରା କଲେ ବହୁ ବିଘ୍ନ ହୁଏ ଉପସ୍ଥିତ ।
ନିଷ୍ଫଳ ସକଳ କର୍ମ ଜଗତେ ବିଦିତ । ୩୦ ।।

ନକ୍ଷତ୍ର ବିଚାର ଏବେ ଶୁଣ ହେ ସୁଧୀର ।
ଅଶ୍ୱିନୀ ଭରଣୀ କୃତ୍ତିକା ରୋହିଣୀ ବିଚାର । ୩୧ ॥
ମୃଗଶିରା ଆର୍ଦ୍ରା ପୁନର୍ବସୁ ପୁଷ୍ୟାଶ୍ଳେଷା ।
ମଘା ପୂର୍ବଫାଲ୍ଗୁନୀ ଯେ ବୃଦ୍ଧ ସୁମନୀଷା । ୩୨ ॥
ଉତ୍ତରଫାଲ୍ଗୁନୀ ହସ୍ତ ଚିତ୍ରା ସ୍ୱାତି ପ୍ରଣ ।
ବିଶାଖା ଯେ ଅନୁରାଧା ଜ୍ୟେଷ୍ଠା ମୂଳା ଘେନ । ୩୩ ।
ପୂର୍ବାଷାଢ଼ା ଯେ ଉତ୍ତରାଷାଢ଼ା ଛ ଶ୍ରବଣା ।
ଧନିଷ୍ଠାନ୍ତ ଶତଭିଷା ପୂର୍ବଭାଦ୍ର ଗଣା । ୩୪ ॥
ଉତ୍ତରଭାଦ୍ର ରେବତୀ ଅଦ୍ଧ ସପ୍ତାବିଂଶ ।
ନକ୍ଷତ୍ର ଏ ଅଟେ ଜାଣ ଜ୍ୟୋତିଷର ଭାଷ । ୩୫ ॥
ଦ୍ୱାଦଶରାଶିକ ଶୁଣ ହେ ପାଠକଗଣ ।
ମେଷ ବୃଷ ମିଥୁନ କର୍କଟ ସିଂହ ଘେନ । ୩୬ ॥
କନ୍ୟା ତୁଳା ବିଛ ଧନୁ ମକର ଯେ କୁମ୍ଭ ।
ମୀନ ଏହି ଦ୍ୱାଦଶରାଶିଙ୍କ ମନେ ଭାବ । ୩୭ ॥
ସତାଇଶ ନକ୍ଷତ୍ରକୁ ବାରଗୋଟି ରାଶି ।
ନବ ନବ ପାଦେ ଭୋଗ କରନ୍ତି ବିଶେଷି । ୩୮ ॥
ଅଶ୍ୱିନୀ ଭରଣୀର ଗୃହ ଆଠପାଦ ।
କୃତ୍ତିକାର ପାଦେ ମେଷରାଶି ନବପାଦ । ୩୯ ॥
କୃତ୍ତିକାର ତିନପାଦ ରୋହିଣୀ ଯେ ଗୃହ ।
ମୃଗଶିରାର ଦୁଇପାଦ ବୃଷେ ଧର । ୪୦ ।
ଏହିପର ନବ ନବ ପାଦେ ବାରରାଶି ।
ସତାଇଶ ନକ୍ଷତ୍ରକୁ ଭଜନ୍ତି ବିଶେଷି । ୪୧ ॥
ଯୋଗମାନଙ୍କର ନାମ ଶୁଣ ହେ ସୁଜନ ।
ଯଥାବିଧିରେ କହିବା ହୁଅ ସାବଧାନ । ୪୨ ॥

ବିଷ୍କୁମ୍ଭ ପ୍ରୀତ ଯେ ଆୟୁଷ୍ମାନ ସଉଭାଗ୍ୟ ।
ଶୋଭନ ଯେ ଅତିଗଣ୍ଡ ସୁକର୍ମା ଏ ଯୋଗ । ୪୩ ।।
ଧୃତି ଶୂଳ ଗଣ୍ଡ ବୃଦ୍ଧି ଧ୍ରୁବ ଯେ ବ୍ୟାଘାତ ।
ହର୍ଷଣ ବଜ୍ର ଅସୃକ୍ ଅ[illegible] ବ୍ୟତିପାତ । ୪୪ ।।
ବରୀୟାନ ପରିଘ ଯେ ଶିବ ସିଦ୍ଧି ସାଧ୍ୟ ।
ଶୁଭ ଶୁକ୍ଳ ବ୍ରହ୍ମ ଇନ୍ଦ୍ର ବୈଧୃତ ଏ ବୋଧ । ୪୫ ।।
ଏହି ସପ୍ତାବିଂଶ ଯୋଗ ଶୁଣ ବୁଧଗଣ ।
ଏବେ କହୁଅଛି ଏକାଦଶ ଯେ କରଣ । ୪୬ ।।
ବବ ବାଳବ କୌଳବ ତୈତଳ ଯେ ଗର ।
ବାଣିଜ୍ୟ ବିଷ୍ଟି ଶକୁନି ଚତୁଷ୍ପାଦ ଧର । ୪୭ ।।
ନାଗ କିନ୍ତୁଘ୍ନ ଏହି ଯେ ଏଗାର କରଣ ।
ଚରଣ ଚରଶ ଦଣ୍ଡ ଏହାଙ୍କୁ ଯେ ଜାଣ । ୪୮ ।।
କୃଷ୍ଣପକ୍ଷ ତୃତୀୟା ଦଶମୀ ରାତ୍ର ବିଷ୍ଟି ।
ସପ୍ତମୀ ଚତୁର୍ଦ୍ଦଶୀର ଦିବସ ଏହିଟି । ୪୯ ।।
ଶୁକ୍ଳପକ୍ଷର ଚତୁର୍ଥୀ ଏକାଦଶୀ ନିଶି ।
ଅଷ୍ଟମୀ ପୂର୍ଣ୍ଣିମା ଦିବା ଜାଣ ବିଷ୍ଟି ମିଶି । ୫୦ ।।
ଏହିରୂପେ ଅନେକ ଜ୍ୟୋତିଷରେ ।
ବିଷୟ ଅଛି କହିବା କେତେ ତା ବାକ୍ୟରେ । ୫୧ ।।
ବୁଝି ବିଜ୍ଞଜନମାନେ ବିଚାର କରିବ ।
ବିଦ୍ୟା ଭୂଷଣ କହେ ମୋ ଦୋଷ ନ ଧରିବ । ୫୨ ।।

## ତୃତୀୟ ସ୍କନ୍ଧ ।

### ରାଗ ଅଷାଢ଼ଶୁକ୍ଳ ।

ଶୁଣ ଜନେ ମନ କର ସୁସ୍ଥିର । କହିବା ଶୁଭଦିନର ବିସ୍ତର ।
ବିଦ୍ୟାରମ୍ଭ କର୍ଣ୍ଣବେଧ ସହିତ । ବିବାହ ବ୍ରତାଦି ହେବ ଉକତ ।
ଶୁଣି ଶିଶୁଗଣ । ଜ୍ୟୋତିର୍ବିଦ୍ୟାରେ ହେବେ ବିଚକ୍ଷଣ । ୧ ।
ନାମକରଣ ବିଧାନକୁ ଶୁଣ । ଚତୁର୍ଥୀ ନବମୀ ତିଥି ମଧ୍ୟେଣ ।
ଚତୁର୍ଦ୍ଦଶୀ ଏ ତିନିତିଥି ତ୍ୟଜ । ଅନ୍ୟ ତିଥିରେ ଶୁଭଦିନ ଲୋଡ଼ ।
ରବି ଶନି କୁଜ । ତିନିବାର ତ୍ୟଜ ଅନ୍ୟରେ ବୁଝ । ୨ ॥
ତିନି ଉତ୍ତର ରୋହିଣୀ ଅଶ୍ୱିନୀ । ଅନୁରାଧା ସ୍ୱାତୀ ଚିତ୍ରାକୁ ଘେନି ।
ମୃଗଶିରା ହସ୍ତା ପୁଣ ରେବତୀ । ଧନିଷ୍ଠା ଶ୍ରବଣା ପୁନର୍ବସୁନ୍ତି ।
ଶତଭିଷା ଏହି । ନକ୍ଷତ୍ରେ ନାମକରଣ ଯୋଗାଇ । ୩ ॥
ଅନ୍ନପ୍ରାଶନ ଦିନ ସ୍ଥିରେ ଭାବ । ରବି ସୋମ ବୁଧ ଗୁରୁ ଭାର୍ଗବ ।
ଏହି ପାଞ୍ଚବାର ଶୁକ୍ଳପକ୍ଷ । ଦ୍ୱିତୀୟା ତୃତୀୟା ପଞ୍ଚମୀ ଲେଖ ।
ଦଶମୀ ଅଷ୍ଟମୀ । ତ୍ରୟୋଦଶୀ ଏହି ତିଥିଙ୍କି ଘେନ । ୪ ॥
ଶ୍ରବଣା ଧନିଷ୍ଠା ଯେ ପୁଷ୍ୟା । ଚିତ୍ରା । ଶତଭିଷା ରୋହିଣୀ ମୃଗ ହସ୍ତା ।
ପୁନର୍ବସୁ ଅଶ୍ୱିନୀ ଯେ ବିଶାଖା । ତିନିଉତ୍ତର ଅନୁରାଧା ଲେଖା ।
ମଘା ଜ୍ୟେଷ୍ଠା ସ୍ୱାତୀ । କୃତ୍ତିକା ସହିତରେ ଯେ ରେବତୀ । ୫
ବେଧ ନକ୍ଷତ୍ର ବର୍ଜନ କରିବ । ଏରୂପେ ଅନ୍ନପ୍ରାଶନରେ ଶୁଭ ।
ଜାଣି ପାଠକେ କରିବ ବିଚାର । କହିବା ଚୂଡ଼ାକର୍ମର ବେଭାର ।
ସୋମ ବୁଧ ଗୁରୁ । ଶୁକ୍ରବାର ଏ ବାରମାନଙ୍କରୁ । ୬ ॥
ଦୁଇ ତିନି ପାଞ୍ଚ ସାତ ଏଗାର । ଦଶ ଦ୍ୱାଦଶ ଅବର ଯେ ତେର ।
ଏହି ତିଥି ସବୁ ଅଟଇ ଶୁଭ । ନକ୍ଷତ୍ର ଏଣିକି ମନରେ ଭାବ ।
ସ୍ୱାତୀ ଜ୍ୟେଷ୍ଠା ହସ୍ତା । ଶତଭିଷା ଶ୍ରବଣାଶ୍ୱିନୀ ଚିତ୍ରା । ୭ ॥

ପୁଷ୍ୟା ମୃଗଶିର ଧନିଷ୍ଠା ଯେନ । ପୁନର୍ବସୁ ରେବତୀ ଯେ ରୋହିଣୀ ।
ବେଧ ବିଧି ବର୍ଜନକୁ ବିଗ୍ରହ । ଚୂଡ଼ାକର୍ମ କଲେ ଶୁଭ ସଞ୍ଚର ।
ବୁଝ ହେ ବିଦୂଷ । ମାଘଠାରୁ ଷଡ଼ମାସେ ପ୍ରକାଶ । ୮ ।।
ମାର୍ଗଶିର ମାଘ ଫାଲ୍ଗୁନମାସ । ବୈଶାଖ ଜ୍ୟେଷ୍ଠ ଅଷାଢ଼ ବିଶେଷ
ସୋମ ବୁଧ ଗୁରୁ ଶୁକ୍ରବାସରେ । ପ୍ରତିପଦା ଦ୍ୱିତୀୟା ତୃତୀୟାରେ ।
ପଞ୍ଚମୀ ଯେ ଷଷ୍ଠୀ । ସପ୍ତମୀ ଅଷ୍ଟମୀ ଦଶମୀ ଏହି । ୯ ।।
ଏକାଦଶୀ ଦ୍ୱାଦଶୀ ତ୍ରୟୋଦଶୀ । କର୍ଣ୍ଣବେଧେ ଏମାନଙ୍କୁ ପ୍ରଶଂସି ।
ଚିତ୍ରା ହସ୍ତା ପୁଷ୍ୟା ଶ୍ରବଣା ସ୍ୱାତୀ । ଅଶ୍ୱିନୀ ଅନୁରାଧା ଯେ ରେବତୀ ।
ମୃଗ ତିନିଉତ୍ତର । ଧନିଷ୍ଠା ପୁନର୍ବସୁ ନକ୍ଷତ୍ରର । ୧୦ ।।
ବୃଶ୍ଚିକାଦି ମିଥୁନମାସମଧ୍ୟେ । ରବି ଗୁରୁ ଶୁକ୍ରବାର ପ୍ରସିଦ୍ଧେ ।
ଦ୍ୱିତୀୟା ତୃତୀୟା ପଞ୍ଚମୀ ଷଷ୍ଠୀ । ଦଶମୀ ଏକାଦଶୀ ଦ୍ୱାଦଶୀଷ୍ଟି ।
ପୁଷ୍ୟା ହସ୍ତାଶ୍ୱିନୀ । ସ୍ୱାତୀ ପୁନର୍ବସୁ ଶ୍ରବଣା ଯେନ । ୧୧ ।।
ଧନିଷ୍ଠା ଶତଭିଷା ଆରଦ୍ରାରେ । ମୂଳା ଅଶ୍ଳେଷା କୃତ୍ତିକା ଦ୍ୱିଜାରେ ।
ମଘା ବିଶାଖା ଚିତ୍ରା ତିନପୂର୍ବ । ରେବତୀ ମୃଗଶିର ଅଟେ ଶୁଭ ।।
ବିଦ୍ୟାରମ୍ଭେ ଜାଣ । ସୋମ ବୁଧବାର ମଧ୍ୟମେ ଗଣ । ୧୨ ।।
ମକର ଆଦି ମିଥୁନମାସରେ । ରବି ଗୁରୁ ଶୁକ୍ର ଏ ତିନବାରେ ।।
ଦ୍ୱିତୀୟା ତୃତୀୟା ଷଷ୍ଠୀ ପଞ୍ଚମୀ । ଦ୍ୱାଦଶୀ ଏକାଦଶୀ ଯେ ଦଶମୀ ।।
ଏ ତିଥିମାନଙ୍କେ । ନକ୍ଷତ୍ର ଏବେ ଶୁଣ ସୁବିବେକେ । ୧୩ ।।
ପୁଷ୍ୟା ହସ୍ତା ମୃଗ ଶ୍ରବଣା ସ୍ୱାତୀ । ଧନିଷ୍ଠା ଚିତ୍ରା ଅଶ୍ୱିନୀ ରେବତୀ ।।
ଜ୍ୟେଷ୍ଠା ଶତଭିଶାନକ୍ଷତ୍ରେ ଯେନ । ଏ ଯୋଗରେ ବ୍ରତ ଉପନୟନ ।।
କଲେ ଶୁଭ ହୋଇ । ବୁଧ ସୋମବାରେ ମଧ୍ୟମ କହି । ୧୪ ।।
କହୁଥାଇ ରଜଚକ୍ର ନିୟମ । ଶୁଣ ପାଠକେ ନୋହି ମନେ ଭ୍ରମ ।।
ଭୂମୀରେ ଚତୁଷ୍କୋଣ କୋଷ୍ଠା ଏକ । ଲେଖିବ ବୃହତ କରି ବିବେକ ।
ତାକୁ ଘାଠଭାଗ । କରି ଅଠକୋଷ୍ଠା କରିବ ବେଗ । ୧୫ ।।

କୃତ୍ତିକା ରୋହିଣୀ ଯେ ମୃଗଶିର । ପ୍ରଥମ କୋଷ୍ଠୀରେ ଲେଖିବ ବୀର
ଆରଦ୍ରା ପୁନର୍ବସୁ ପୁଷ୍ୟାଶ୍ଳେଷା । ଦ୍ୱିତୀୟ କୋଷ୍ଠରେ ଲହିବ ଋଷା
ମଘା ପୂର୍ବୋତ୍ତର । ଫାଲଗୁନୀ ରଖିବ ତୃତୀୟର । ୧୬ ॥
ହସ୍ତା ଚିତ୍ରା ସ୍ୱାତି ବିଶାଖା ଗ୍ରହ । ଚତୁର୍ଥ ଘରେ ରଖିବ ବଗ୍ରହ ॥
ଅନୁରାଧା ଜ୍ୟେଷ୍ଠା ମୂଳ ଏ ତିନ । ପଞ୍ଚମଗୃହେ ସ୍ଥାପିବ ସୁଜ୍ଞାନ ॥
ପୂର୍ବୋତ୍ତରଷାଢ଼ା । ଅଭିଜିତ* ଶ୍ରବଣା ଷଷ୍ଠେ ଲେଡ଼ା ।୧୭॥
ଧନିଷ୍ଠା ଶତଭିଷା ପୂର୍ବଭାଦ୍ର । ସପ୍ତମ କୋଷ୍ଠାରେ ରଖିବ ସାଧୁ ॥
ଉତ୍ତରଭାଦ୍ର ରେବତୀ ଅଶ୍ୱିନୀ । ଦ୍ୱିତୀଏ ଅଷ୍ଟମ ସ୍ଥାନର ପେନ ॥
ଏପର ଲେଖିବ । ନକ୍ଷତ୍ର ବଗ୍ରହ ଫଳ ଦେଖିବ । ୧୮ ॥
ଯେଉଁ ନକ୍ଷତ୍ରେ ଅଙ୍ଗନାର ପୁଷ୍ପ । ପ୍ରଥମରେ ହୋଇଥିବ ପ୍ରକାଶ ॥
ସେ ନକ୍ଷତ୍ର ଉକ୍ତ କୋଷ୍ଠାମଧ୍ୟରେ । ଯେଉଁ କୋଷ୍ଠାରେ ଥିବ ତାପଦ୍ମରେ
ବଗ୍ରହ କରିବ । ଏହିରୂପେ ଫଳାଫଳ ଧରିବ । ୧୯ ॥
ପ୍ରଥମ କୋଷ୍ଠାରେ ସମ୍ପତ୍ତି ହୋଏ । ଦ୍ୱିତୀୟରେ ବନ୍ଧ୍ୟା ଦୋଷ ଘଟାଏ
ତୃତୀୟେ ସୁଭଗା ହୋଏ ସୁନେତ୍ରା । ଚତୁର୍ଥେ ଅପୁତ୍ରୀ ନାମେ ବଦତା ॥
ପାଞ୍ଚେ ପୁତ୍ରବତୀ । ଷଷ୍ଠରେ ଘଟେ ବିଧବା ବିପତ୍ତି । ୨୦ ॥
ସପ୍ତମରେ ସର୍ବଗୁଣସମ୍ପନ୍ନା । ଅଷ୍ଟମକୋଷ୍ଠିରେ ବେଶ୍ୟା ଭାବନା ॥
ଏରୂପେ କୋଷ୍ଠିମାନଙ୍କର ଫଳ । ବଗ୍ରହ ବୁଝିବ ପାଠକକୁଳ ॥
ଏ ଗାନ ନୁହଇ । ଯଥାକ୍ରମରେ ଫଳକୁ ଦିଅଇ । ୨୧ ॥
ତିନି ପୂର୍ବାରେ ହେଲେ ଗାନ୍ଧ୍ୟଋତୁ । ସାତମାସ ଦୋଷ ଜାଣ ସୁହେତୁ
ମଘା ଆରଦ୍ରାରେ ପଞ୍ଚମ ମାସ । ଜ୍ୟେଷ୍ଠା ଚିତ୍ରାରେ ଦଶମାସ ଦୋଷ
ଅଶ୍ଳେଷା କୃତ୍ତିକା । ବରଷେ ଦୋଷ ଘଟେ ବହୁ ଶଙ୍କା ।୨୨॥

---

* ଉତ୍ତରାଷାଢ଼ା ଶ୍ରବଣା ଏହି ଦୁହିଙ୍କ ମଧ୍ୟରେ ଅଭିଜିତ (ଅର୍ଦ୍ଧ ନାମାନ୍ତର) ନକ୍ଷତ୍ର ଭୋଗ ହୁଏ ସତ୍ୟ କିନ୍ତୁ ତାହାର ଗଣନା କରା ଯାଏ ନାହିଁ । ଅଭିଜିତ ସ୍ଥାନରେ ୦ ଶୂନ୍ୟ ଲେଖା ଯାଏ ।

ରବିରେ ବିଧବା ହୁଅଇ ଯୋଷା । ସୋମେ ପତିବ୍ରତା ମଙ୍ଗଳେ ବେଶ୍ୟା
ବୁଧରେ ସୁଭଗା ହୁଅଇ ଜାଣ । ଗୁରୁରେ ପତି ସମ୍ପତ୍‌ସମ୍ପୂର୍ଣ୍ଣ ॥
ଶୁକ୍ରେ ପୁତ୍ରବତୀ । ଶନିବାରେ ହୋଏ ବନ୍ଧ୍ୟା ଯୁବତୀ । ୧୩ ॥
ନନ୍ଦା ଭଦ୍ରା ତିଥିରେ ପତିବ୍ରତା । ବିପୁଳ ସମ୍ପଦ ନୋହେ ଚାହ୍ନ ତା ॥
ଦ୍ୱିପାଦ ଲଗ୍ନ ବୃକ୍ଷେ ଦୁଃଖ ସ୍ଥିତି । ପାଦଲଗ୍ନ ନକ୍ଷତ୍ରେ ଗର୍ଭପାତ ॥
ପ୍ରାତେ ଶୁଚୀହୋଇ । ମଧ୍ୟାହ୍ନେ ପରପାକଳୀ ବୋଲ୍ଲଇ । ୧୪ ॥
ଅପରାହ୍ନରେ କରଇ ଯେ ବେଶ୍ୟା । ନିଶାଅର୍ଦ୍ଧରେ ଯେ ମରଣ ଦଶା
ରାତ୍ରିରେ ହେଲେ ସାଧବୀ କରାଇ । ଦିବସେ କାମିନୀର ସୁଖଦାଇ ॥
ଯେହୁ ଦୁଇସନ୍ଧ୍ୟା । ଅବଶ୍ୟ ନାଶକ କରଇ ବନ୍ଧ୍ୟା । ୧୫ ॥
ତ୍ରିପୂର୍ବା ଭରଣୀ ଆର୍ଦ୍ରା ଅଶ୍ଳେଷା । ବିଧବା କରେ ଏ ଜ୍ୟୋତିଷଭାଷା
ମଘାରେ କରେ ଶୋକ ପୁଣି ବନ୍ଧ୍ୟା । କୃତ୍ତିକା ଜ୍ୟେଷ୍ଠାନକ୍ଷତ୍ରେ ଦରିଦ୍ରା
ଏ ନୁହଇ ଆନ । ଜ୍ୟୋତିଷବେଦ କହୁଛନ୍ତି ସେନ । ୧୬ ॥
ବୃଷ କୁମ୍ଭ ମେଷ ଶୁଭ କାଳରେ । ସୋମ ବୁଧ ଗୁରୁ ଶୁକ୍ରବାରରେ ॥
ରିକ୍ତାବର୍ଜିତ ପୁଷ୍ୟା ହସ୍ତା ସ୍ୱାତୀ । ପୁନର୍ବସୁ ତ୍ରିଉତ୍ତର ରେବତୀ ॥
ଧନିଷ୍ଠା ରୋହିଣୀ । ମୃଗେ ନବବଧୂ ଯାତ୍ରାକୁ ଗଣି ॥ ୧୭ ॥

## ବିବାହ ନକ୍ଷତ୍ର ବିଚାର ।

ରୋହିଣୀ ଉତ୍ତର ତ୍ରୟ ରେବତୀ । ମଘା ମୃଗଶିରା ହସ୍ତା ଯେ ସ୍ୱାତୀ ॥
ମୂଳା ଅନୁରାଧା ଏହି ଏଗାର । ବିବାହ ନକ୍ଷତ୍ର ସିଦ୍ଧ ବିଚାର ।
ଧନିଷ୍ଠା ଶ୍ରବଣା । ଚିତ୍ରାଶ୍ୱିନୀ ଏ ମଧ୍ୟମରେ ଗଣା ॥ ୧୮ ॥
ମଘା ମୂଳାର ଯେ ପ୍ରଥମ ପାଦ । ବିବାହେ ବର୍ଜିବ ନୋହେ ଶୁଭଦ
ରେବତୀ ନକ୍ଷତ୍ରର ଶେଷ ଭାଗ । ବର୍ଜିବ ନୁହଇ ସେ ଶୁଭ ଯୋଗ ॥
ଏ ଉତ୍ତର ଶୁଣ । ବିବାହ ତିଥି କହିବା ବଖାଣ । ୧୯ ॥

ଅମାବାସ୍ୟା ରିକ୍ତି ଭଦ୍ରା ଯେ ତିଥୀ । ବିବାହେ ଗ୍ରହଣ ନୋହେ ସର୍ବଥା ।
ଶନିବାରରେ ରିକ୍ତା ତିଥି ହେବେ । ବିବାହରେ ଶୁଭ ଜ୍ୟୋତିଷ
ବୋଲେ ॥
ଜନ୍ମ ଲଗ୍ନରାଶି । ହୋଇ ଯଦିପୁତ୍ରେ ଭୁଞ୍ଜେ ସମ୍ପତ୍ତି । ୩୦॥
ରବିଜନ୍ମେ ନାଶ ବିଧବା ହୋଇ । ଦ୍ୱିତୀୟରେ ବନ୍ଧ୍ୟା କରଇ ॥
ଚତୁର୍ଥେ ପଞ୍ଚମେ ଦୁଃଖ କୁମର । ନାଶ ସପ୍ତମେ ନଷ୍ଟ କାମବାର ॥
ମୃତ୍ୟୁ ଅଷ୍ଟମରେ । ନବ ଦ୍ୱାଦଶେ ରୋଗ ଶୋକ କରେ ।୩୧॥
ବିବାହରେ ରବି ତୃତୀୟ ଷଷ୍ଠ । ଦଶ ଏକାଦଶ ଶୁଭ ପ୍ରକଟ ॥
ବୃହସ୍ପତିର ଦ୍ୱିତୀୟ ପଞ୍ଚମ । ସପ୍ତ ନବ ଏକାଦଶ ଉତ୍ତମ ॥
ଏପରି ଜ୍ୟୋତିଷ । ପଣ୍ଡିତମାନଙ୍କର ଅଟେ ଭାଷ । ୩୨ ॥
ଦେବ ପ୍ରତିଷ୍ଠା ଯୋଗ ଧୀରେ ଶୁଣ । ଉତ୍ତରାୟଣ ମାସରେ ପ୍ରଧାନ ॥
ସୋମ ବୁଧ ଗୁରୁ ଶୁକ୍ରବାସରେ । ତ୍ରୟୋଦଶୀ ପଞ୍ଚମୀ ଦଶମୀରେ ॥
ପୂର୍ଣ୍ଣିମୀ ଦ୍ୱାଦଶୀ । ଏକାଦଶୀ ଶୁକ୍ଳପକ୍ଷେ ବିଶେଷି । ୩୩ ॥
ପଞ୍ଚମୀ ଅଷ୍ଟମୀ କୃଷ୍ଣପକ୍ଷରେ । ନକ୍ଷତ୍ର କହୁଥାଇଁ ଶୁଣ ଧୀରେ ॥
ରୋହିଣୀ ମୃଗ ଆର୍ଦ୍ରା ତ୍ରିପୂର୍ବା । ପୁଷ୍ୟା ହସ୍ତା ଚିତ୍ରା ସ୍ୱାତୀ ମାଧବ ॥
ତ୍ରିଉତ୍ତର ମୂଳ । ଜ୍ୟେଷ୍ଠା ଅନୁରାଧା ରେବତୀ ଠୂଳ । ୩୪ ॥
ତୁଳା କର୍କଟ ଯେ ମେଷ ମିଥୁନ । କୁମ୍ଭ ବୃଶ୍ଚିକ ଏ ମାସରେ ଘେନ ॥
ରିକ୍ତା ତିନି ତିଥି ଶୁଣ ଆବର । ବୁଧ ଗୁରୁ ଶୁକ୍ର ଏହି ବାସର ॥
ନକ୍ଷତ୍ର ବିଧାନ । କହୁଥାଇ ଶୁଣ ଦେଇ ମନ ॥ ୩୫ ॥
ଅଶ୍ୱିନୀ ମୂଳା ଆର୍ଦ୍ରା ରୋହିଣୀ । ଚିତ୍ରା ସ୍ୱାତୀ ମୃଗ ହସ୍ତାକୁ ଘେନ ॥
ପୁଷ୍ୟା ପୁନର୍ବସୁ ରେବତୀ ପୁଣି । ଉତ୍ତରଷାଢ଼ ଉତ୍ତରଫାଲ୍ଗୁନୀ ॥
ଏ ନକ୍ଷତ୍ରେ ଜାଣ । ଯେଉଁ ୨ ଯୋଗ ବର୍ଜିବ ଶୁଣ । ୩୬ ॥
ଅତିଗଣ୍ଡ ଶୂଳ ବଜ୍ର ପରିଘ । ବିଷ୍କୁମ୍ଭ ବ୍ୟାଘାତ ବୈଧୃତି ଯୋଗ ॥
ବ୍ୟତିପାତ ଗଣ୍ଡ ତାସଙ୍ଗେ ଗ୍ରହ । ଏଥିଁ ଆନଯୋଗ ଯତନେ ନେଇ

ଗୃହାରମ୍ଭ କର । ହୋଇବ ଶୁଭ ଜ୍ୟୋତିଷ ବଚନ । ୩୭ ।।
ଗୃହାରମ୍ଭେ ଉକ୍ତ ଏ ସବୁମାସ । ଉକ୍ତା ଭିନ୍ନତଥି ତହିଁ ନିର୍ଦ୍ଦୋଷ ।।
ବୁଧ ଗୁରୁ ଶୁକ୍ର ଶନିବାରରେ । ପୁଷ୍ୟା ହସ୍ତା ମୃଗାଶ୍ୱିନୀ ଚିତ୍ରାରେ ।।
ଶ୍ରବଣା ରୋହିଣୀ । ଧନିଷ୍ଠା ଜ୍ୟେଷ୍ଠା ତ୍ରିଉତ୍ତର ପୁଣି । ୩୮ ।।
ଶତଭିଷା ଅନୁରାଧା ରେବତୀ । ପୁନର୍ବସୁ ମୂଳା ତାହାର ଶାନ୍ତି ।।
ଅନ୍ୟର ଯୋଗମାନଙ୍କୁ ଛାଡ଼ିବ । ଗୃହ ପ୍ରବେଶ ଏ ଯୋଗେ କରିବ ।
ହେବ ଶୁଭଫଳ । କଦାପି ନ ଘଟିବ ଅମଙ୍ଗଳ । ୩୯ ।
ଏ ବିଷୟରେ କେତେକ ବିଷୟ । ବିସ୍ତର କଲେ ହୋଇବ ହୃଦୟ ।।
ବ୍ୟବହାର ଉପଯୋଗୀ ବିସ୍ତର । କହିଲି ପାଠକେ ବିବେକ କର ।।
ବୁଝି ଭାବ ଯେନ । କହେ କପିଳେଶାନନ୍ଦ ଏମନ୍ତ । ୪୦ ।।

---

## ଚତୁର୍ଥ ଖଣ୍ଡ ।

### ଯୋଗ ବଙ୍ଗଳାଣୀ ।

ବିବାହର ନାଗନାଡ଼ୀ ଅଟେ ବଡ଼ କହିବା ସୁଜନେ ଶୁଣ ।
ବିବାହ ସ୍ଥଳରେ ବରକନ୍ୟାଙ୍କର ବୁଝାଯାଏ ଯାହା ଜାଣ । ୧ ।।
କୃତ୍ତିକାଠାବର ତ୍ରିଜ୍ଞାପରଯନ୍ତେ ସର୍ପ ଅକାରେ ଲେଖିବ ।
ତିନି ଧାଡ଼ି କର ତହିଁରୁ ବିଚାରି ନାଗନାଡ଼ୀକି ବୁଝିବ । ୨ ।
ବରକନ୍ୟାଙ୍କର ନକ୍ଷତ୍ର ଯେବେ ଏକ ଧାଡ଼ୀରେ ପଡ଼ିବ ।
ନାଗନାଡ଼ୀ ହେଲା ବୋଲି ବୁଝି ତହିଁ ବିବାହକୁ ନ କରିବ । ୩ ।।
ପ୍ରଥମ ଧାଡ଼ୀରେ ରୋଗ ଜାତକରେ ମଧ୍ୟେ କନ୍ୟାପକ୍ଷ ନାଶ ।
ଶେଷଧାଡ଼ୀରେ ଯେ ପଡ଼ିଲେ ଜାଣିବ ନ ରହିବ ତାଙ୍କ ବଂଶ । ୪ ।

ଅନ୍ୟ ଯାତ୍ରୀମାନଙ୍କରେ ଯେବେ ଦୁହିଁଙ୍କ ନକ୍ଷତ୍ର ହେବ ।
ବଶିଷ୍ଠଙ୍କ ମତେ ଶୁଭଯୋଗ ଜାଣି ବିବାହ ନଷ୍ଟେ କରିବ । ୫ ॥

## ଏ ଯୋଗନାଡ଼ୀ ।

| | | | | | | | | |
|---|---|---|---|---|---|---|---|---|
| ୩ | ୮ | ୯ | ୧୪ | ୧୫ | ୨୦ | ୨୧ | ୨୬ | ୨୭ |
| ୪ | ୭ | ୧୦ | ୧୩ | ୧୬ | ୧୯ | ୨୨ | ୨୫ | ୧ |
| ୫ | ୬ | ୧୧ | ୧୨ | ୧୭ | ୧୮ | ୨୩ | ୨୪ | ୨ |

କନ୍ୟା ରାଶି ଯେଉଁ ତାହା ଅଷ୍ଟମରେ ଯେବେ ବରରାଶି ହେବ ।
ବରରାଶି ଷଷ୍ଠେ କନ୍ୟାରାଶି ହେଲେ ଷଡାଷ୍ଟକକୁ ଜାଣିବ । ୬ ।
ଷଡାଷ୍ଟକ ଯୋଗେ ବିବାହ ହୋଇଲେ ମନ୍ଦଫଳକୁ ଘଟାଇ ।
ଦେବତାମାନଙ୍କ ମଧ୍ୟରେ ଏପର ଗଣ ବର୍ଜିତ ଅଟଇ । ୭ ॥
ଦେବତା ମନୁଷ୍ୟ ରାକ୍ଷସ ଯେପର ବୃତ୍ତାନ୍ତ ଶୁଣ ପୃଥ୍ୱୀର ।
ହସ୍ତା ସ୍ୱାତି ମୃଗଶିରା ଅଶ୍ୱିନୀ ଯେ ଶ୍ରବଣା ତହିଁ ସଙ୍ଗର । ୮ ॥
ପୁଷ୍ୟ । ଅନୁରାଧା ରେବତୀ ଯେ ପୁନର୍ବସୁ ଏ ଦେବତା ଜାଣ ।
ମନୁଷ୍ୟ ଜାତର ନକ୍ଷତ୍ରକୁ ଏବେ କହୁଥାଇ ଯେ ବଖାଣ । ୯ ॥
ଆର୍ଦ୍ରା ରୋହିଣୀ ତିନ ଉତ୍ତର ଯେ ଦ୍ୱିଜା ତିନ ପୂର୍ବ ଯେତ ।
ମନୁଷ୍ୟ ଅନ୍ତେ ରାକ୍ଷସ ଗଣକୁ କହୁଥାଇ ଶୁଣ ପୁଣି । ୧୦ ॥
ଜ୍ୟେଷ୍ଠା ଅଶ୍ଳେଷା ଯେ ବିଶାଖା ମୂଳାତ ଧନିଷ୍ଠାଦ ଶତଭିଷା ।
କୃତ୍ତିକା ମଘା ଚିତ୍ରା ଏ ଅସୁରନ୍ତ ଅଟେ ଜ୍ୟୋତିଷର ଭାଷା । ୧୧ ॥
ନର ରାକ୍ଷସରେ ଅନିଷ୍ଟ ଘଟଇ ରାକ୍ଷସ ଦେବରେ କଳି ।
ଦେବତାରେ ନର ଭକ୍ତି କରଇ ପ୍ରଜାତରେ ହୋଏ ମେଳି । ୧୨ ॥
ଏପରିରେ ଦଶମେଳକ ଅଛି ଯେ ତାହା ସବୁ ବୁଝିକରି ।
ବିବାହ କରିବା ବିଚାରିଲେ କେବେ ନ ଘଟବେ ବରନାଶ । ୧୩ ॥

ବରକନ୍ୟାଙ୍କର ଏକ ରାଶି ଏକ ନକ୍ଷତ୍ର କି ଏକ ରାଶି ।
ହୋଇଥିଲେ ଜାଣ ରାଜଯୋଟକ ଯେ ହୁଅଇ ବନ୍ଧୁ ପ୍ରଶଂସି ।୧୪।
ତଥା ଏକାଦଶ ତୃତୀୟ ଯେ ସମସପ୍ତ ଦଶ ଚାରି ପୁଣି ।
ରାଶି ହେଲେ ରାଜଯୋଟକ ହୁଅଇ ନୁହଇ ଏକଥା ଅନ ।୧୫।
ରାଜଯୋଟକରେ ନାଡୀ ଦୋଷ ତଥା ନରରାକ୍ଷସାଦ ଦୋଷ ।
ଦଷମେଳକରେ ଯାହା କଷ୍ଟ ଦୋଷ ନ ଲାଗଇ ତାହା ଲେଶ ।୧୬।
ଏପରି ବିଚାରି ବିବାହ କରିବା ଅଟଇ ଉତ୍ତମ ଜାଣ ।
ଜ୍ୟୋତିର୍ବିଦମାନେ କହିଅଛନ୍ତି ଯେ ନୁହଇ ଏ ଅପ୍ରମାଣ ।୧୭।
କନ୍ୟାରାଶି ଯୋଗେ ବିବାହ ହୁଅଇ ବରରାଶି ନ ବୁଝନ୍ତି ।
ଏପରି ନିୟମ ସର୍ବସାଧାରଣଜନେ ବିଚାରି ଅଛନ୍ତି ।୧୮।

## ଚନ୍ଦ୍ରର ନିୟମ ।

ଚନ୍ଦ୍ର ତୃତୀୟରେ ଷଷ୍ଠେ ଦଶେ ଏକାଦଶେ ବିଦ୍ୟା ଧନ ହୋଇ ।
ପଞ୍ଚମ ଦ୍ୱିତୀୟେ ନବମରେ ରୋଗୀ ବିଷ୍ଟରୁ ନଷ୍ଟ କରାଇ ।୧୯।
ଜନ୍ମ ଅଷ୍ଟମରେ ମରଣ ଘଟାଏ ଚତୁର୍ଥ ସପ୍ତ ଦ୍ୱାଦଶେ ।
କ୍ରୂର ଜଡ଼ତାକୁ ଘଟାଏ ଅବଶ୍ୟ ଶାସ୍ତ୍ରରେ ଏହା ପ୍ରକାଶେ ।୨୦।

ତାରଚନ୍ଦ୍ର ଶୁଦ୍ଧି କହୁଥାଇଁ ଏବେ ଶୁଣ ସୁବୁଦ୍ଧିବାଳକେ ।
ଯେଉଁ ଦିନ ଯେଉଁ ନକ୍ଷତ୍ର ହୋଇବ ମନେ ରଖି ତାହା ଠିକେ ।୨୧।
କରି ଜନ୍ମଦିନ ନକ୍ଷତ୍ରକୁ ମୂଳ କର ଅଙ୍ଗୁଳି ରେଖାରେ ।
ନବସଂଖ୍ୟା ଯାଏ ଗଣିମ ଚଢୋଇ ହୁଏ ନୋହିବା ପ୍ରକାରେ ।୨୨।
ନବରୁ ଅଧିକ ହେଲେ ପୁନରପି ମୂଳ ରେଖାରୁ ଗଣିବ ।
ଯେଉଁ ରେଖାଠାରେ ସେଦିନ ନକ୍ଷତ୍ର ଗଣନାକ୍ରମେ ପଡ଼ିବ ।୨୩।
ତାକୁ ମନେ ରଖି ମୂଳରେଖାଠାରୁ ଏହି ରୂପେ ସେ ଗଣିବ ।
ଜନ୍ମ ସଂପଦ ବିପଦ କ୍ଷେମ ପୁଣି ପ୍ରତ୍ୟରି ସାଧକ ଭାବ ।୨୪।

ନଧନ ମିତ୍ର ପରମମିତ୍ର ଏଣୁ ନବତାର ହେଲା ଜାଣ ।
ଯେଉଁ ରେଖାଠାରେ ଯେଉଁ ନାମ ହେବ ତାହାକୁ କର ବଖାଣ । ୨୫ ।
ଜନ୍ମ ତୃତୀୟ ପଞ୍ଚମ ସପ୍ତମ ଯେ ଅଶୁଭ ତାର ଅଟଇ ।
ଆଉ ସବୁ ଶୁଭ ଜାଣି ନାନାକାର୍ଯ୍ୟ କଲେ ଦୋଷ ନ ଘଟଇ । ୨୬ ।

ନବଗ୍ରହଙ୍କର ଗୋଚର ଫଳକୁ ଶୁଣ ଜନେ ଦେଇ ମନ ।
ଯହିଁରେ ଯେ ଫଳ ଘଟିବ ତା ଜାଣି ହୁଅ ସର୍ବେ ସାବଧାନ । ୨୭ ।
ରବି ଜନ୍ମେ ଶତ୍ରୁ ବୃଦ୍ଧି ଦ୍ୱିତୀୟରେ ବନ୍ଧୁଭେଦକୁ କରଇ ।
ତୃତୀୟରେ ଶୁଭ ଚତୁର୍ଥରେ ଦୁଃଖ ପାଞ୍ଚେ ମିତ୍ରହାନି ହୋଇ । ୨୮ ।
ଷଷ୍ଠେ ଧନ ପାଏ ସ୍ଥାନନଷ୍ଟ ଅଷ୍ଟମେ ଅମାନ୍ୟ ନବମେ ଶୋକ ।
ଦଶେ କାର୍ଯ୍ୟ ସିଦ୍ଧି ଏଗାରେ ସୌଭାଗ୍ୟ ଦ୍ୱାଦଶେ ବନ୍ଧନ ଦୁଃଖ । ୨୯ ।
ଚନ୍ଦ୍ରଜନ୍ମେ ଶୁଭ ଦ୍ୱିତୀୟରେ କ୍ଲେଶ ତୃତୀୟରେ ଶତ୍ରୁ ମରେ ।
ଚତୁର୍ଥରେ ପୀଡା ପଞ୍ଚମରେ ଭୋଗ ଧାନ୍ୟ ଲାଭ ଯେ ଷଷ୍ଠରେ । ୩୦ ।
ସପ୍ତମେ ସ୍ତ୍ରୀଲାଭ ଆଠେ ଚକ୍ଷୁପୀଡା ନବମରେ ଭୟ ହୋଇ ।
ଦଶେ କାର୍ଯ୍ୟସିଦ୍ଧି ଏଗାରରେ ସୁଖ ଦ୍ୱାଦଶେ ଭୟ ଦିଅଇ । ୩୧ ।
ମଙ୍ଗଳଗ୍ରହର ଦ୍ୱିତୀୟ ତୃତୀୟ ଷଷ୍ଠ ଦଶ ଏକାଦଶ ।
ଶୁଭ ହୁଏ ଆଉ ଅଶୁଭ ହୁଅଇ ଜାଣିବ ଏହା ବଦୁଷ । ୩୨ ।
ବୁଧର ଯେ ଶୁଭ ଦ୍ୱିତୀୟ ଚତୁର୍ଥ ଷଷ୍ଠାଷ୍ଟ ଦଶ ଏଗାର ।
ଦ୍ୱାଦଶ ଏଡ଼ାର ଅଶୁଭ ହୁଅଇ ଚିତ୍ତରେ ବିଚାର କର । ୩୩ ।
ବୃହସ୍ପତି ଦୁଇ ପାଞ୍ଚ ସାତ ନବ ଏକାଦଶ ଶୁଭକର ।
ଆଉ ସବୁରାଶି ଅଶୁଭଫଳଦ ସନ୍ଦେହ ଏଥି ନ ଧର । ୩୪ ।
ଶୁକ୍ରର ଦ୍ୱିତୀୟ ତିନ ଚାରି ପାଞ୍ଚ ଆଠ ନବମ ଏଗାର ।
ଦ୍ୱାଦଶ ଏସବୁ ଶୁଭଫଳ ଦିଏ ସ୍ଥାନରେ ଅଶୁଭ ଘୋର । ୩୫ ।
ଶନିର ତୃତୀୟ ଷଷ୍ଠ ଦଶ ଏକାଦଶ ଏ ଅଟି ଶୁଭଦ ।
ଆଉ ରାଶିମାନଙ୍କରେ କଷ୍ଟେ ଘଟାଇ ଦିଏ ପ୍ରମାଦ । ୩୬ ।

ସୂର୍ଯ୍ୟକେତୁଙ୍କର ତିନ ଷଷ୍ଠ ଦଶ ଏକାଦଶ ଶୁଭ କର ।
ଅନ୍ୟ ସବୁ ଅଟେ ଅଶୁଭ ଏକଥା ଆନ ନୁହଇ ନକର । ୩୭ ।
ଏହିରୂପେ ଠିକ୨ ଫଳ ଦେଖି କହିଲ ଗୀତବନ୍ଧରେ ।
କପିଳେଶ ବିଦ୍ୟାଭୂଷଣ କହଇ ଶୁଣହେ ସୁବଜ୍ଞନରେ । ୩୮ ।

---

## ଚତୁର୍ଥ ଗୀତ ।— ରାଗ ରାମକେରୀ ।

ଶୁଣି ଜନେ ମନ କରେ ଶିଘ୍ର ଜାତକର୍ମ ବିଚାର ।
ଲଗ୍ନ ଅଦ୍ଧ ନିରୂପଣ ଯେ ଏଥି ହେବ ପ୍ରଚାର । ୧ ॥
ଆଦ୍ୟ ଅଙ୍କ ଦଣ୍ଡ ଶେଷକୁ ଲବ୍ଧା ମନେ ଘେନିବ ।
ଯେଉଁ ମାସ ଯେତେ ଦିବସ ତହିଁ ବାଣ୍ଟି ବୁଝିବ । ୨ ॥
ତିନି ଚଉବନ ମେଷ ଯେ ମୀନ ଲଗ୍ନ ହୁଅଇ ।
ବୃଷ କୁମ୍ଭ ଚାର ଚୋଇଶ ବୁଝି ମନକୁ ଦେଇ । ୩ ॥
ମିଥୁନ ମକର ହୁଅଇ ପାଞ୍ଚ ଆଠ ପ୍ରମାଣି ।
ପାଞ୍ଚ ଅଠତିରିଶ କର୍କଡ଼ା ଧନୁ ନିଷ୍ଟୟ ଜାଣ । ୪ ॥
ପାଞ୍ଚ ପଞ୍ଚତିରିଶ ସିଂହ ଯେ ବିଛା ହୋଇଛି ସିଦ୍ଧ ।
କନ୍ୟା ତୁଳ ପାଞ୍ଚ ବାଇଶ ଘେନ ଅହେ ବିବୁଧ । ୫ ॥
ଯେଉଁ ମାସ ଯେତେ ଦିବସେ ହେବ ଶିଶୁ ଜନମ ।
ସେତକ ମାସ ଯେତେ ଦିବସ ତାକୁ ଅଗ ଘେନମ । ୬ ॥
ଲଗ୍ନ ଦଣ୍ଡ ଲବ୍ଧା ରଖିଣ ଏକଜାତକ କର ।
ମାସ ଦିନେ ହର ଲବ୍ଧକୁ ଦିନକୁ ଯେ ବିଚାର । ୭ ॥
ଜନ୍ମଦିନ ଯେତେ ଦିବସ ଲବ୍ଧେ ଗୁଣି ସତ୍ୱର ।
ମୂଳଅଙ୍କୁ ଫେଡ ଶେଷକୁ ଲଗ୍ନ ସ୍ଥିର ବିଚାର । ୮ ॥

ଯେତେ ରହିଲା ଏ ଭାଗରେ ରବି ଉଦେ ଜାଣିବ ।
ତହୁଁ ଅନ ଲଗ୍ନ ମିଶାଇ ଦନମାନ ଗଣିବ । ୯ ॥
ଲଗ୍ନଧର୍ଷଣକୁ କହିବା ଶୁଣ ଏକଚିତ୍ତରେ ।
ଜନ୍ମ ସମୟରେ ଛାଇକ ବୁଝି ମାପ ସୂତ୍ରରେ । ୧୦ ॥
ଯେତେ ପାଦ ଯେତେ ଅଙ୍ଗୁଳ ହେବ ତାକୁ ରଖିବ ।
ଅଙ୍ଗୁଳ ଯେ ହେଲା ତାହାକୁ ପାଦବନ୍ଧା କରିବ । ୧୧ ॥
ସବୁ ଅଙ୍କ ରଖି ସାତକୁ ବେଗେ ତହିଁ ମିଶାଇ ।
ଦୁଇରେ ଗୁଣନ୍ତେ ଯେ ହେଲା ହରଣ ସେ ହୁଅଇ । ୧୨ ॥
ଦୁଇଶତ ଚଉଷଠିକି ରଖି ଏଥି ହରିବ ।
ଲବ୍ଧ ଯେ ହେବ ସେ ଦଣ୍ଡ ଶେଷ ଲଥା ବୁଝିବ । ୧୩ ॥
ବାକୀ ଥିଲେ ତାକୁ ବଲଥା କରି ମନକୁ ଦେଇ ।
ଲେଉଟ ଛଇରେ ଏ ଫଲ ଦନ ଶେଷ ଘଟଇ । ୧୪ ॥
ଯେବେ ଘନାଚ୍ଛନ୍ନ* ବଶରୁ ଖରା ଉଗ୍ର ନ ଥିବ ।
ତେବେ ଏ ବିଧିରେ ଲଗ୍ନକୁ ବୁଝି କାର୍ଯ୍ୟ କରିବ । ୧୫ ॥
କରିବ କଲନା ବେଲକୁ ତହୁଁ ନିଶ୍ୱାସ ଧର ।
ଲଗ୍ନ ନିଶ୍ଚୟକୁ ଆଣିମ ଜନେ ମନେ ବିଚାର । ୧୬ ॥
ମୀନ ବୃଷ ଅଳି† କର୍କଟ କନ୍ୟା ମକର ଲଗ୍ନେ ।
ଦକ୍ଷିଣନାସାରେ ପବନ ବହେ ବୁଝ ସୁମନେ । ୧୭ ॥
ମେଷ ଧନୁ କୁମ୍ଭ ମିଥୁନ ସିଂହ ତୁଳ ଲଗ୍ନରେ ।
ବାମବର୍ତ୍ତୀ ହୋଏ ପବନ ବୁଝ ସ୍ଥିରମନରେ । ୧୮ ॥
ଯେବେ ଲଗ୍ନେ ମନ ସନ୍ଦେହ ହେବ କହୁଛି ପୁଣ ।
ଚନ୍ଦ୍ରଗ୍ରହ ଯେଉଁ ରାଶିରେ କରିଥିବେଟ ସ୍ଥାନ । ୧୯ ॥

---

* ମେଘାଚ୍ଛନ୍ନ ।        † ବିଛା ।

ଯେ ରାଶିଲାପ୍ତିକ ଯେ ସ୍ଥାନେ ଥିବେ ସେଠାରୁ ଗଣ ।
ତାହା ସପ୍ତମେ ବା ତ୍ରିକୋଣେ ଲଗ୍ନ ହେବ ପ୍ରମାଣ । ୧୦ ।
ଅନ୍ତର କହିବା ଲଗ୍ନର ଅଛି ଯେଉଁ ବର୍ଗର ।
ଯେଉଁ ନକ୍ଷତ୍ରରେ ବସତ କରୁଥିବେ ଗ୍ରହର ‡ । ୧୧ ॥
ତାହାର ସପ୍ତମ ଦ୍ୱାଦଶେ ଲଗ୍ନ ଥିଲେ ବର୍ଗର ।
ହବସଭାଗରେ ଜନମ ହୋଇଅଛି ଏ ନର । ୧୨ ॥
ସପ୍ତଦଶ ଅବା ତେଇଶେ ଯେବେ ଥିବଟି ଲଗ୍ନ ।
ତେବେ କଣୀକନ୍ୟା ଅଟଇ ନୁହେ ଏ କଥା ଅନ । ୧୩ ।
ରବି ଗୁରୁ ଲଗ୍ନ ଏ ତିନ ଥିଲେ ଓଜରାଶିରେ ।
ପୁରୁଷ କୋଷ୍ଠୀ ଏ ଜାଣିମ ସ୍ତ୍ରୀଶ ଜାଣ ସମରେ । ୧୪ ॥
ମେଷ ସିଂହ ଧନୁ ଲଗ୍ନରେ ମନ୍ଦିରର ପୂର୍ବାଂଶେ ।
ଯୋଷା ପଞ୍ଚସିଦ୍ଧ ସୂତିକା ଯୁକ୍ତ ଶୁକ୍ଳବାସେ । ୧୫ ॥
ବୃଷ କନ୍ୟା ଅବ ମକରେ ଗୃହ ଦକ୍ଷିଣଭାଗେ ।
ନାରୀ ଗୃହସହ ସୂତିକା ପୀତବସନଯୋଗେ । ୧୬ ॥
ମିଥୁନ ତୁଳ ବା କୁମ୍ଭରେ ଗୃହପଶ୍ଚିମ ଅଂଶେ ।
ସପ୍ତ ନାରୀସହ ସୂତିକା ଯୁକ୍ତ ମଳିନବାସେ । ୧୭ ॥
ମୀନ ଅଳି କର୍କଡ଼ାରେ ଯେ ଗୃହ ଉତ୍ତରେ ଜାଣ ।
ନାରୀ ଷଟ ଅବା ଅନରେ ରକ୍ତବସ୍ତ୍ର ଧାରଣ । ୧୮ ॥
ଏହିପେ ଲଗ୍ନକୁ ବର୍ଗ ବୁଝି ଅଟେ ବଦୂଷ ।
ବଦତ ଶ୍ରୀ ବିଦ୍ୟାଭୂଷଣ କ୍ଷମା କର ମୋ ଦୋଷ । ୧୯ ॥

---

‡ ରବି ।

## ପଞ୍ଚମ ଛନ୍ଦ ।—ରାଗ ଅଷାଢ଼ ଶୁକ୍ଳବାଣୀ ।

କରଇଁ ବନ୍ଦନ ଶଶିଭୂଷଣ । ପଞ୍ଚବଦନ କମଳଧାରଣ ।
ଗର୍ବିନାଶବର ଦଶବଦନ । ଅଭିଳଷିତ କର ମୋର ପୂର୍ଣ୍ଣ ।
ଜ୍ୟୋତିଷ ବିସ୍ତର । କହିବ ସଂକ୍ଷେପେ କରୁଣା କର । ୧ ।
ଶୁଣ ଜନେ ମନ ଦେଇ ଏ ଗୀତ । କହୁଛି ଯେଉଁ ରୂପେ ଦଶାପାତ
ଅନ୍ତର ପ୍ରତ୍ୟନ୍ତର ଗାହିବ ଦେନ । ପଞ୍ଚଦଶା * ଯେ ଦଶାଫଳ ଦେନ
ଉତ୍କଳ ବାଣୀରେ । ଶୁଭାଶୁଭ ବୁଝ ଏହି ଶ୍ରେଣୀରେ । ୨ ।
ରବି ନିଶାକର ମଙ୍ଗଳ ତମ † । ବୃହସ୍ପତି ଶନି ବୁଧ ସପ୍ତମ ।
କେତୁ ଶୁକ୍ରଗୋଦ ଏ ନବଗ୍ରହ । ଯଥା ସଞ୍ଚରନ୍ତି ନକ୍ଷତ୍ର ବ୍ୟୂହ ।
ବୁଝ ମନ ଦେଇ । କୃତ୍ତିକାଠାରୁ ଏ ସଂଖ୍ୟା ଉଠଇ । ୩ ।
କୃତ୍ତିକାଠାବରୁ ଭରଣୀ ‡ ଯାଏ । ନବ ନବ ହୋଇ ଏସଂଖ୍ୟା ହୋଏ
ଅଙ୍ଗୁଳିରେଖାରେ କର ପ୍ରମାଣ । ଯେଉଁ ନକ୍ଷତ୍ରେ ଯେଉଁ ଗ୍ରହ ଜାଣ
ତା ସଂଖ୍ୟା ବର୍ଷରୁ । ଷାଠିଭାଗେ କାଟ ଭୋଗ ତହିଁର । ୪ ।
ଷଟ୍ ଦଶ ସାତ ଅଠର ଷୋଳ । ଉନବିଂଶ ସପ୍ତଦଶ ଏ ଠୂଳ ।
ସାତ କୋଡ଼ିଏ ଏରୂପେ ସଂଖ୍ୟାରେ । ବିଶାଶଏ ବର୍ଷ ନବଗ୍ରହରେ
ଏରୂପେ ଅୟୁଷ । ମନୁଷ୍ୟଙ୍କର ପାପୁଁ ଅଳପାୟୁଷ । ୫ ।
କୃତ୍ତିକା ଉତ୍ତରଫାଲ୍ଗୁନୀ ଦେନ । ଉତ୍ତରାଷାଢ଼ା ଏ ରବିର ଜାଣ ।
ରୋହିଣୀ ହସ୍ତା ଶ୍ରବଣା ଚନ୍ଦ୍ରର । ମୃଗଶିର ଚିତ୍ରା ଧନିଷ୍ଠା ଏର ।
ଅରଦ୍ରା ଯେ ସ୍ୱାତୀ । ଶତଭିଷା ଏ ରାହୁର ବଦତି । ୬ ।
ପୁନର୍ବସୁ ବିଶାଖା ଦେନ । ପୂର୍ବାଭାଦ୍ର ବୃହସ୍ପତି ପ୍ରମାଣ ।

---

* ୧ ମହାଦଶା, ୨ ଅନ୍ତର, ୩ ପ୍ରତ୍ୟନ୍ତର, ୪ ସୂକ୍ଷ୍ମ, ୫ ପ୍ରାଣ ।

† ରାହୁ ।  ‡ ଦ୍ୱିଜା ।

ଧନି ପୂଷ୍ୟା ଅନୁରାଧା ସହିତ । ଉତ୍ତରଭାଦ୍ର ଶୁଣ ଦେଇଁ ଚିତ୍ତ
ବୁଧର ପ୍ରମାଣ । ଅଶ୍ଳେଷା ଜ୍ୟେଷ୍ଠା ରେବତୀକ ଜାଣ । ୭ ।
କେତୁ ମଘା ମୂଳା ଅଶ୍ୱିନୀ ଭନ । ପୂର୍ବାଫଲ୍ଗୁନୀ ପୂର୍ବାଷାଢା ବେନ ।
ଭରଣୀ ସହିତେ ଶୁକ୍ରର ଏ ମାନ । ସପ୍ତବିଂଶଋକ୍ଷ ଏରୂପେ ଜାଣି
ନବଗ୍ରହେ ଯୁତ । ତିନି ତିନି ହୋଇ ଅଛି ବିହିତ । ୮ ।
ଜନ୍ମ ଋକ୍ଷର ଯେତେ ଦଣ୍ଡ ଭୋଗ । ତାହାକୁ ତହିଁର କାଟିବ ଅଗ୍ର ।
ଯେଉଁ ଗ୍ରହ ହେବ ତାର ବରଷ । କରିବ ତାହାକୁ ସହିର ମାସ ।
ଷାଠିଏ ଭାଗେ ହର । ଶେଷକୁ ଦିନ ଦଣ୍ଡରେ ବିସ୍ତର । ୯ ।
ଯେ ହେଲା ଭାଗେ ସେ ଦଣ୍ଡକୁ ଜାଣ । ଭୋଗ ଯେତେ ଦଣ୍ଡ ତହିଁ ଗୁଣିଣ
ମୂଳ ବର୍ଷରୁ କାଟି ଶେଷ ରଖ । ତହିଁ ଉତ୍ତାରୁ ଅନ ଗ୍ରହ ଲେଖ ।
ଏହୁ ଚକ୍ରପାତ । କହିଗଲେଣ୍ଟ ଜ୍ୟୋତିଷପଣ୍ଡିତ । ୧୦ ।
ଅନ୍ତର ଦଶା କହିବା ହେ ଧୀର । ଶୁଣ ମନ ଦେଇ ଏହୁ ବିସ୍ତର ।
ଗ୍ରହମାନଙ୍କର ଯେ ନିଜଦଶା । ତାକୁ ବୋଲନ୍ତି ଏହା ମହାଦଶା ।
ମହାଦଶା ରଖି । ଅନ୍ତର ଆଣିବ ଯେନ ବିବେକି । ୧୧ ।
ଯାହା ଦଶାରେ ଜାତ ଯେଉଁ ଜନ । ତାହା ଦଶାକୁ ମୂଳ କର ସେ
ସେ ଯେତେ ବର୍ଷ ମୂଳ ପିଣ୍ଡ ରଖ । ପୁଣି ସେହି ଅଙ୍କେ ଗୁଣ ବିବେ
ଶେଷେ ଯେତେ ଅଙ୍କ । ଦିନରେ ଗୁଣି ଦିନ ତାକୁ ଲେଖ । ୧୨ ।
ବାକି ଅଙ୍କ ଯେତେ ସେ ମାସ ହେଲା । ଏରୂପେ ନିଜ ଅନ୍ତର ହୋଇଲା
ତହିଁ ମୂଳ ପିଣ୍ଡ ରଖିବ ପୁଣି । ତାପରେ ଯେଉଁ ଗ୍ରହଦଶା ଜା
ଗୁଣିଣ ସହିରେ । ମାସ ଦିନ କର ପୂର୍ବ ବିସ୍ତରେ । ୧୩ ।
ଏରୂପେ ଶେଷ ନବ ସଂଖ୍ୟା ଯାଏ । ବିସ୍ତାରି ରଖିଲେ ସ୍ୱଦଶା ହୋଏ
ଏହାର ନାମ ଅନ୍ତର୍ଦଶା ଜାଣ । ପ୍ରତ୍ୟନ୍ତର ଏବେ କହିବା ପୁଣ ।
ବିସ୍ତରି ଚିତ୍ତରେ । ଗୁଣି ହରି ବୁଝ ସୂକ୍ଷ୍ମ ଭାବରେ । ୧୪ ।

---

॥ ୨୭ ନକ୍ଷତ୍ର ।

ଚନ୍ଦ୍ରଦଶାକୁ ଦିନ କରିବ । ଷଏ କୋଡକରେ ତାକୁ ହରିବ ।।
ନ ଛୁଟିଲେ ଦଣ୍ଡ ଲଭ୍ୟା କରିଣ । ସେହି ହରଣରେ ହରି ତକ୍ଷଣ ।
ଲବ୍ଧ ରଖିବ । ଦଶା ବରଷରେ ତାକୁ ଗୁଣିବ । ୧୫ ।
ଯେ ହେବ ଫଳ ପ୍ରତ୍ୟନ୍ତର ସେହି । କ୍ରମେ ନବଗ୍ରହ ଫଳକୁ ଏହି ।
କ୍ରମରେ ଅଣି ବୁଝିବ ସୁବୋଧ । ପ୍ରତ୍ୟନ୍ତରକୁ ବିଶାଂଶଏ ବାଧ ।
କର ଲବ୍ଧ ରଖ । ଦଶା ବର୍ଷେ ଗୁଣି ସୂକ୍ଷ୍ମକୁ ଦେଖ । ୧୬ ।
ସୂକ୍ଷ୍ମକୁ ସେହିରୂପେ ବିଶାଂଶଏ । ହର ଦଶାରେ ଗୁଣିଲେ ଯେ ହୋଏ ।
ପ୍ରାଣ ସେହୁ ମନେ କର ସୁଜାଣ । କ୍ରମରେ ନବ ଗ୍ରହଙ୍କର ଅଣ ।
କରି ମତି ସ୍ଥିର । ହରଣ ଗୁଣନର ଏ ବେଭାର । ୧୭ ।।
ଶିଶୁଜନଙ୍କ ବୋଧକୁ ବିଚାରି । କହିଲି ସଂକ୍ଷେପରେ ମୁ ପ୍ରଚାରି ।
ଭାଷା ପ୍ରବନ୍ଧରେ ହେ ବିଜ୍ଞଜନ । ଏଥିରେ ମୋର ଯେ ଦୋଷ ନ ଘେନ
ଗଲି ମୁ ଶରଣ । ଭୁମ୍ୟୁପାନ୍ତେ ଭାଷେ ବିଦ୍ୟାଭୂଷଣ । ୧୮ ।

---

ଷଷ୍ଠ ସ୍କନ୍ଧ ।— ରାଗ କଳଶା ବାଣୀ ।।

ଶୁଣ ଜନେ ମନ ଦେଇ ଅପୂର୍ବ ଚରିତ ।
ଶୁଭାଶୁଭ ଗ୍ରହଫଳ କହିବା ଉଚିତ ।
ଯହିଁ ତହିଁ ଥିଲେ ଚାରି ଗ୍ରହ ଏକତ୍ରରେ ।
ପୁଂସେ ରାଜଯୋଗ ବିଚାରିବୁ ସ୍ତ୍ରୀଙ୍କଠାରେ ଯେ । ୧ ।
ତାର ଭଙ୍ଗଫଳ ଏବେ କହୁଅଛି ଶୁଣ ।
ରବି ଶନି ସଙ୍ଗେ ବୁଧ ଥିଲେଟି ପ୍ରମାଣ ;

ମହାଦାରିଦ୍ର ଦୋଷ ଏ ମନେ ସ୍ଥିର କର ।
ଧନପତି * ସୁତ ହେଲେ କହଇ ଶୁକର ଯେ । ୨ ।
କୁମ୍ଭ ମୀନ ମେଷ ବୃଷ ମିଥୁନ ତୁଳରେ ।
ଥିଲେ ସର୍ବଗ୍ରହ ଲଗ୍ନସହିତ ବେଗରେ ।
ଦଶ୍ରଚ୍ଛତ୍ରଯୋଗ ଏହୁ ମନେ ହେତୁ କର ।
ଦାସୀପୁତ୍ର ହେଲେ ନଷ୍ଟ ହୋଏ ନରେଶ୍ୱର । ୩ ।
ମେଷ ତୁଳ କର୍କଟ ମକର ମୂର୍ତ୍ତିଘରେ ।
ଯେବେ ଥାନ୍ତି ସର୍ବଗ୍ରହେ ଲଗ୍ନସହିତରେ ଯେ ।
ଚତୁଃସାଗର ଯୋଗଟି ଏହାକୁ କହନ୍ତି ।
ଦରିଦ୍ରପୁତ୍ରକୁ ହେଲେ କରଇ ନୃପତି ଯେ । ୪ ।
ଏକରାଶି ଗ୍ରହ ଏକରାଶିରେ କ୍ରମରେ ।
ଯେବେ ଥାନ୍ତି ଗ୍ରହଗଣ ବୁଝ ସୁମନରେ ।
ହଂସପାଦଯୋଗ ବୋଲି ଏହାକୁଟି କହ ।
ଲଭଇ ରାଜବିଭୂତି‡ ଫଳକୁ ଦେଖାଇ ଯେ । ୫ ।
ଦୁଇ ଦୁଇ ଗ୍ରହ ଯେବେ ରାଶିମାନଙ୍କରେ ।
ବସିଥାନ୍ତି ଲଗ୍ନସହ ପଞ୍ଚଭବନରେ ।
ଶୂଦ୍ରେ ବା ଚଣ୍ଡାଳେ ହେଉ ସନ୍ଦେହତ ନାହିଁ ।
ହେଲେ ଦାସପୁତ ସିଂହାସନରେ ବସଇ ଯେ । ୬ ।
କର୍କଟରେ ଦେବଗୁରୁ† ମକରେ ମଙ୍ଗଳ ।
ରବି ଚନ୍ଦ୍ର ମେଷ ବୃଷେ ଶନି ହବା ତୁଳ ।
ଏତେ ସ୍ଥାନେ ଏତେ ଗ୍ରହ ଥିଲେ ରାଜଯୋଗ ।
କୁଳଅନୁସାରେ ସମ୍ପତ୍ତିକ କରେ ଭୋଗ ଯେ । ୭ ।

---

* କୁବେର । ‡ ଐଶ୍ୱର୍ଯ୍ୟ । † ବୃହସ୍ପତି ।

ଯେବେ ସର୍ବଗ୍ରହ ପଞ୍ଚମରେ ବସିଥାନ୍ତି ।
ଶୁଭ ବା ଅଶୁଭ ହେଉ ଏଥି ନାହିଁ ଭ୍ରାନ୍ତି ।
ପଞ୍ଚାନନଯୋଗ ଏହୁ ମନେ ହେଳୁ କର ।
ସ୍ୱର୍ଗେ ଇନ୍ଦ୍ରପ୍ରାୟେ ପୂଜା ପାଏ ସେହୁ ନର ଯେ । ୮ ।
ବୃଷରେ ମିଥୁନେ କର୍କଟରେ ସିଂହେ କନ୍ୟେ ।
ସହୁ ଯେବେ ବସିଥାଇ ବୁଝ ହେ ସୁମନେ ।
ସକଳସମ୍ପତ୍ତି ଭୋଗ ସ୍ୱଚ୍ଛନ୍ଦ ଦଅଇ ।
ଉପ୍ପୁଳ-ଭୂଷଣ ବହ୍ନି ପର୍ଯ୍ୟେ ନାଶଇ ଯେ । ୯ ।
ଭୂଜ* ବୃହସ୍ପତି ଯେବେ ଏକଗୃହେ ଥାନ୍ତି ।
କି ଅବା ସେ ଦେବଗୁରୁ ଭୂଜଙ୍କୁ ଦେଖନ୍ତି ।
ତେବେ ସେ ଅଶେଷ ରିଷ୍ଟ ନାଶି ଶୁଭ ଦ୍ୟନ୍ତି ।
ଜନନୀସୁହୃଦ ସୁଖଠାବରେ ରଖାନ୍ତି ଯେ । ୧୦ ।
ଅଶ୍ୱେଦ୍ୱଣୀ ହୋଇ ଶନି ଯେବେ ଧନୁପରେ ।
ଥାନ୍ତି ତେବେ ଜନଙ୍କୁ ସେ ଦଶାବପାକରେ ।
ସ୍ୱକଯୋଗ ଫଳ ଦ୍ୟନ୍ତି ଅନ୍ୟଥା ନୁହଇ ।
ଏରୂପେ ଜ୍ୟୋତିଷବିଦମାନେ ଛନ୍ତି କହୁ ଯେ । ୧୧ ।
ଦଶମାଧିପତି କେନ୍ଦ୍ରେ ତ୍ରିକୋଣେ ବା ଯନେ ।
ଥାନ୍ତି କିବା ବଳବାନ ହୋଇ ଅନ୍ୟସ୍ଥାନେ ।
ତେବେ ଜାଣ ସିଂହାସନଯୋଗ ଏ ଘଟଇ ।
କୁଳ ଅନୁରୂପେ ପୂଜ୍ୟ ନରଙ୍କୁ କରଇ ଯେ । ୧୨ ।
କେନ୍ଦ୍ରେ ବା ତ୍ରିକୋଣେ ମେଷ ବୃଷ କନ୍ୟା ମୀନ ।
ଏଥି ମଧ୍ୟେ ରବି ବୁଧ କରିଥିଲେ ସ୍ଥାନ ।

---

* ମଙ୍ଗଳ ।

ଅନେକ ସୁଖ ଭୋଗନ୍ତି ନୃପତି କରନ୍ତି ।
ଯଥାକ୍ରମେ ଅନ୍ୟେ ଥିଲେ ଅଶୁଭ ପ୍ରାପତି ଯେ । ୧୩ ।
କର୍ମସ୍ଥାନେ ଏକା ହୋଇ ଯେବେ ବୃହସ୍ପତି ।
ବସିଥାଇ ପାପଦୃଷ୍ଟି ନୋହେ ତାରକତି ।
ସର୍ପାପୂ ଧନୀ କରଇ ଏକ ପୁତ୍ର ଦେଇ ।
ହରିଭକ୍ତି କରି ଶେଷେ ମୁକ୍ତିକୁ କରଇ ଯେ । ୧୪ ।
ନବମସ୍ଥାନରେ ଯାର ରବିସୁତ ଥାଇ ।
ବୈକୁଣ୍ଠବାସୀ ସେ ଜନ ନିଶ୍ଚୟ ଅଟଇ ।
ଇହଲୋକେ ସୁଖଭୋଗ କରେ ଅତିଶୟ ।
ବୈକୁଣ୍ଠ ଗମଇ ଶେଷେ ନାହିଁଟି ସଂଶୟ ଯେ । ୧୫ ॥
ଚତୁର୍ଥନାୟକ ଶୁଭସଙ୍ଗ ଲଭିଥାଇ ।
ଲଗ୍ନ ନାଥଭୂଲେ କବା ସ୍ୱସ୍ଥାନ ଲଭଇ ।
ଏମନ୍ତ ଯୋଗରେ ଜନ୍ମ ହୁଏ ଯେଉଁ ଜନ ।
ସାମନ୍ତଗୁଣରେ ସେହୁ ହୁଅଇ ରଞ୍ଜନ ଯେ । ୧୬ ॥
ଧନପତି* କର୍ମପତି† କର୍ମେ କ ଧନରେ ।
ରହିଥିଲେ ସ୍ୱଜା କରେ ଦରିଦ୍ରଜନରେ ।
କଧନପ‡ ଯେବେ କର୍ମେ ଧନେ ବା ରହଇ ।
ସ୍ୱଜପୁତ୍ର ହେଲେ ତାଙ୍କୁ ଦରିଦ୍ର କରଇ ଯେ । ୧୭ ॥
ଭୂଲେ ରବି ବିଛାଘରେ ନିଶାପତି¹ ଥାଇ ।
କର୍କଟେ ମଙ୍ଗଳ କନ୍ୟେ ଶୁକ୍ର ସଞ୍ଚରଇ ।
ମକରରେ ଦେବଗୁରୁ² ବୁଧ ଥାନ୍ତି ମୀନେ ।

---

* ଲଗ୍ନ ଦ୍ୱିତୀୟାଧିପ ଗ୍ରହ । † ଲଗ୍ନ ଦଶମାଧିପ ଗ୍ରହ । ‡ ଲଗ୍ନାଷ୍ଟମାଧିପ ।
¹ ଚନ୍ଦ୍ର । ² ବୃହସ୍ପତି ।

ମହାଦାରିଦ୍ର ଦୋଷ ଏ ଶୁଣ ବନ୍ଧୁଜନେ ଯେ । ୧୮ ॥
କର୍ମ ଧର୍ମ ଦୁଇଘରେ ଯେବେ ପାପ ଥାଇ ।
ଧନପତି ପାପ ହୋଇ ପାପରେ ରହଇ ।
ଏ ଯୋଗେ ଜନ୍ମିଲେ ଜନ ଦରିଦ୍ର ହୁଅଇ ।
ଧନ ହେଲେ ପାପକର୍ମେ ବ୍ୟୟକୁ କରଇ ଯେ । ୧୯ ॥
ଶୁଣ ଜନେ କହୁଥାଇଁ ସୁତର ବିଚାର ।
ପାପଗ୍ରହେ ବସିଥାନ୍ତି ଯେବେ ବ୍ୟୟ* ଘର ।
ସୁତପତି† ପାପ ହୋଇ ଏବା ପାପେ ଥାଇ ।
ପାପେ ଯୁକ୍ତ ହେଲେ ନଷ୍ଟେ ଅପୁତ୍ରୀ କରାଇ ଯେ । ୨୦ ॥
କର୍କଟରେ ଯେବେ ରବି ବାସ କରୁଥାନ୍ତି ।
ତେବେ ସେ ଜନକୁ ନଷ୍ଟେ ଅପୁତ୍ରୀ କରନ୍ତି ।
ସୁତଗୃହେ ପାପ ଥିଲେ ସୁତରେ କଷଣ ।
କରଇ ଦଇବଯୋଗେ ହୁଅଇ ଖଣ୍ଡନ ଯେ । ୨୧ ॥
ସୁତପତି ସ୍ତ୍ରୀ ଗ୍ରହ ହେଲେ ସୁତା ଜାତ ।
ନପୁଂସକ ଗ୍ରହ ହେଲେ କରେ ଗର୍ଭପାତ ।
ପୁଂସ ଗ୍ରହ ହେଲେ କରେ ପୁରୁଷ ସନ୍ତତି ।
ଏରୂପେ ବୁଝ ସୁଜନେ ଗ୍ରହଙ୍କର ରୀତି ଯେ । ୨୨ ॥
କଳତ୍ରସ୍ଥାନ ବିଚାର କହିବା ସୁଜନେ ।
ଯଥାବିଧି ଅନୁସାରେ ଶୁଣ ଧୀରମନେ ।
କଳତ୍ରନାୟକ ପାପେ ଏବା ଶୁକ୍ରସଙ୍ଗେ ।
ଥିଲେ ଦୁଇଜାୟା କରେ ଯଥା ରଶ୍ମିଯୋଗେ ଯେ । ୨୩ ॥
କଳତ୍ରସ୍ଥାନରେ ଯେତେ ଗ୍ରହ ବସିଥାନ୍ତି ।

---

* ଲଗ୍ନ ଦ୍ୱାଦଶ ।    † ଲଗ୍ନ ପଞ୍ଚମାଧିପତି ।

ଯେତେ ଜାତ୍ୟା ସେ ଜନର ଅବଶ୍ୟ ବସ୍ତ୍ର ।
ଜାତ୍ୟାସ୍ଥାନେ ରବି କୁଜ ଶନି ରାହୁ କେତୁ ।
ବାସ କରିଥିଲେ ଜାତ୍ୟାସ୍ଥାନେ ହୋଏ ମୃତ୍ୟୁ ଯେ । ୨୪ ॥
ଦ୍ୱିତୀୟ ଚତୁର୍ଥ ସପ୍ତ ଅଷ୍ଟମ ଦ୍ୱାଦଶ ।
ଏଥି କାହିଁ ଭୂମିପୁତ୍ର କରିଥିଲେ ବାସ ।
ପୁରୁଷ କୋଷ୍ଠୀରେ ଥିଲେ ସ୍ତ୍ରୀଜୀବ ନାଶଇ ।
ସ୍ତ୍ରୀଙ୍କର ହେଲେ ପତିବିଚ୍ଛେଦ କରାଇ ଯେ । ୨୫ ॥
ଏରୂପେ ଅନେକ ଫଳ ଜ୍ୟୋତିଷ ପ୍ରମାଣ ।
କହି କେ ପାରିବ ତାହା ମନୁଷ୍ୟ ହୋଇଣ ।
ଶ୍ରୀ ଗୁରୁ-କୃପାରୁ କହୁ ଫଳ କଲି ଗୀତ ।
ନ ଦେନ ମୋ ଦୋଷ ବିଦ୍ୟାଭୂଷଣ ରଚିତ ଯେ । ୨୬ ॥

---

୮ ପଦ ।— ରାଗ ରସ କୋଇଲି ବାଣୀରେ ।

ଶୁଣ ହୃଦୁ ଜନେ ମନକୁ ଦେଇ । ଶିଶୁ ଉତ୍ପନ୍ନ କହୁଅଛଇଁ ।
ଅଶ୍ୱିନୀ ମଘା ମୂଳା ତିନି ଅଟ । ତିରଶ ଦଣ୍ଡକୁ ଗଣ୍ଡ ସନ୍ଧ୍ୟା ସେ
ଜ୍ୟେଷ୍ଠା ରେବତୀ ଅଶ୍ଳେଷା ଯେ । ଏମାନଙ୍କ ଅନ୍ତ ଉଗଗଣ୍ଡ ହୋଏ
ଶୁଣ ତାହାଙ୍କର ଦଶା ଯେ । ୧ ।
ଦିବା ଗଣ୍ଡ ଜ୍ୟେଷ୍ଠା ମୂଳା ଦୁଇର । ଅଶ୍ଳେଷା ମଘା ଗଣ୍ଡ ଜାମିନୀର ।
ରେବତୀ ଅଶ୍ୱିନୀ ଦୁଇ ସନ୍ଧ୍ୟାର । ଶୁଣ ଫଳ ଏଥି ଜାତ ଜନର ସେ
ସନ୍ଧ୍ୟାଗଣ୍ଡେ ଶିଶୁ ନାଶ ଯେ । ରାତିଗଣ୍ଡେ ମାତୃ ବିଚ୍ଛେଦ କରଇ
ଦିବା ଗଣ୍ଡେ ପିତୃଧ୍ୱଂସ ଯେ । ୨ ।

---

ଅଶ୍ୱିନୀ ଗଣ୍ଡ ଷୋଡଶ ବରଷ । ମଘା ଅଠ ମୂଳା ଚାରି ବରଷ ।
ଜ୍ୟେଷ୍ଠା ଅଶ୍ଳେଷା ଦୁଇ ଦୁଇ ଜାଣ । ରେବତୀ ଏକ ବରଷ ପ୍ରମାଣ ସେ
ଏରୂପରେ ଗଣ୍ଡ ରିଷ୍ଟ ଯେ, । ବୁଝି ବଡ଼ୁଜନେ ଗଣ୍ଡ ରିଷ୍ଟ ଶାନ୍ତି
କଲେ ଦୋଷ ହୁଏ ନଷ୍ଟ ଯେ । ୩ ।

ନବଗ୍ରହ ରିଷ୍ଟ ଶିଶୁକାଳରେ । ଯେରୂପେ ହୋଏ ଶୁଣ ସୂକ୍ଷ୍ମ ନରେ
ପାପଗ୍ରହ ଥିଲେ କେନ୍ଦ୍ର ତ୍ରିକୋଣେ । ଷଷ୍ଠ ଅଷ୍ଟମେ ଶୁଭଗ୍ରହମାନେ ସେ
ଥାଇଁ ସୂର୍ଯ୍ୟୋଦୟେ ଜାତ ଯେ, । ହେଲେ ସେ ବାଳକ ସଦ୍ୟ ଯମ-
ଲୋକ ଗମନ କରେ ନିଶ୍ଚିତ ଯେ । ୪ ।

ସପ୍ତମ ପଞ୍ଚମ ନବ ଦ୍ୱାଦଶ । ଲଗ୍ନ ରନ୍ଧ୍ରେ ପାପଯୁକ୍ତ ନଶୀଶ ।
ଶୁକ୍ର ବୁଧ ଗୁରୁ ଏ ତିନି ଖଗ । ନ ଦେଖନ୍ତି ବା ନୋ ହୁଅବେ ସେ
ଯୋଗ ସେ । ଏଯୋଗେ ଶିଶୁ ଜନ୍ମିଲେ ଯେ । ତତ୍‌ବଂଶ ବିନାଶ ହୋଏ
ଏହୁ ଭାଷ ଜ୍ୟୋତିଷେ ବଡ଼ୁ ବୋଲେ ଯେ । ୫ ।

ଲଗ୍ନେ ଯେବେ ଭୂମିନନ୍ଦନ × ଥାଇ । ଶୁଭଗ୍ରହ ଦୃଷ୍ଟି ନ ପଡ଼େ ତହିଁ ।
ଷଷ୍ଠାଷ୍ଟମେ ଶନି ଯୁକ୍ତ ମଙ୍ଗଳ । ଶୁଭ ଅଦୃଷ୍ଟେ ସପ୍ତମରେ ମେଳ ସେ
ସଦ୍ୟ ଶିଶୁ ନାଶ ହୋଏ ଯେ, । ମଙ୍ଗଳ ରିଷ୍ଟ ଏ ମଙ୍ଗଳ ଦଏ
ମିଥ୍ୟା ନୁହଇ ଏ ଭାଷ ଯେ । ୬ ।

କର୍କଟେ ଯେବେ ଶଶିପୁତ୍ର * ଥାଇ । ଲଗ୍ନ ଷଷ୍ଠାଷ୍ଟମେ ହବା ରହଇ
ନିଶାକର † ତାକୁ ଦେଖଇ ଯେବେ । ଚାରିବରଷରେ ମାରଇ ତେବେ
ଯେ । ଏକଥା ନୁହଇ ଆନ ଯେ, । ଜ୍ୟୋତିଷ ପଣ୍ଡିତ ଏହା ବୋଲି-
ଛନ୍ତି ବୁଝି ଜନେ ଦେଇ ମନ ଯେ । ୭ ।

ଦେବଗୁରୁ ଥାଇ ମଙ୍ଗଳ ଘରେ । ଲଗ୍ନ ଅଷ୍ଟମ ଯେବେ ହୋଇ-
ପାରେ । ରବି ଶଶୀ ଶନି ଭୌମ ‡ ଏମାନେ । ଦେଖୁଥାନ୍ତି ଶୁକ୍ର

---

× ମଙ୍ଗଳ । * ବୁଧଗ୍ରହ । † ଚନ୍ଦ୍ର । ‡ ମଙ୍ଗଳ ।

ଦୃଷ୍ଟିବଶେନେ ସେ । ତିନ ବରଷେ ମାରନ୍ତି ଯେ, । କଦାପି ଶିଶୁର
ନ ହୋଇ ଯେ ରକ୍ଷା ବିଜ୍ଞଜନେ କହନ୍ତି ଯେ । ୮ ।
କର୍କଟ ସିଂହେ ଯେବେ ଶୁକ୍ର ଥାଏ । ଅବା ଷଷ୍ଠାଷ୍ଟମେ ଦ୍ୱାଦଶେ
ରହେ । ଅଶୁଭମାନେ ଦେଖୁଥାନ୍ତି ତାକୁ । ଅବଶ୍ୟ ସେ ପ୍ରାଣେ
ମାରେ ଶିଶୁକୁ ଯେ । ଷଷ୍ଠ ବରଷେ ପ୍ରମାଣ ଯେ, । ନୁହଇ ଏକଥା
କଦାପି ଅନ୍ୟଥା ଜନେ ହେତୁ କର ଯେନ ଯେ । ୯ ।
ଲଗ୍ନେ ଶନି ଥାଇ ପାପଦୃଷ୍ଟିରେ । ଶିଶୁକୁ ମାରଇ ଷୋଳ ଦିନରେ
ପାପସଙ୍ଗେ ଥିଲେ ମାସକେ ନାଶ । ଅଥବା ବରଷେ ହୋଏ
ଯମ୍ଭୂତ ସେ । ନିଶ୍ଚୟ ଘଟେ ଏ ଭାଷ ଯେ, । ଗ୍ରହଗତ ବିଜ୍ଞପଣ୍ଡିତ
ଉକତ କହିଲି ନାହିଁ ମୋ ଦୋଷ ଯେ । ୧୦ ।
ଲଗ୍ନ ଚତୁର୍ଥ ସପ୍ତମ ଦଶମ । ଥାଇ ଏତେ ସ୍ଥାନେ ଯଦ୍ୟପି ତମ * ।
କ୍ରମେ ପଞ୍ଚ ଦଶ ଷୋଳ ବାଇଶ । ବରଷେ ଶିଶୁର ହୁଅଇ ନାଶ ସେ
କହନ୍ତି ବିଜ୍ଞ ଜନେ ଯେ, । ଏହୁ ରାହୁ ରିଷ୍ଟ ଦିଏ ବହୁ କଷ୍ଟ
ଯେନ ଜନେ ସାବଧାନେ ଯେ । ୧୧ ।
ସପ୍ତମକେନ୍ଦ୍ରେ ରାହୁ ଥିବ ବସି । ଦେଖୁଥିବେ ତାକୁ ସବିତା † ଶଶୀ ‡
ଶୁଭଦୃଷ୍ଟି ନ ଥିବ ଯେ ତା ଠାରେ । ବାଇଶ ବର୍ଷେ ମାରଇ ଶିଶୁରେ
ଯେ । ଏପରି ଅନେକ ରିଷ୍ଟ ଯେ, । ରାହୁର ଘଟଇ କେତେ
କହିବଇଁ କହୁଁ ହେବ ବହୁ କଷ୍ଟ ଯେ । ୧୨ ।
କେତୁ ଉଦୟ ନକ୍ଷତ୍ରରେ ଜାଣ । ଶିଶୁ ଯେବେ ହୋଇଥାଇ ଜନମ
ସେ ଋକ୍ଷ + ଅରଦ୍ରା ଅବା ଅଶ୍ଳେଷା । ହୋଇ ଥିଲେ ଶିଶୁ ମରଣ ଦଶା
ସେ । ଘଟଇ ଏକଥା ସତ ଯେ, । ନବଗ୍ରହ ରିଷ୍ଟ କହିଲି ସଂକ୍ଷେପେ
ବୁଝି ଜେନ ଦେଇ ଚିତ୍ତ ଯେ । ୧୩ ।

---

* ରାହୁ । † ସୂର୍ଯ୍ୟ । ‡ ଚନ୍ଦ୍ର । + ନକ୍ଷତ୍ର ।

ଏପରି ନବଗ୍ରହଙ୍କର ଭେଦେ । ଉକ୍ତ ଅଛୁ ଜ୍ୟୋତିଷ ଶାସ୍ତ୍ରମତେ ।
ଅଷ୍ଟୋତ୍ତରୀ ସେହିରୂପେ ଅନେକ । ଅଛଇ ମନେ ଯେନ ସୁଜ୍ଞଲୋକ ହେ
ବୃଦ୍ଧି କର ଏବଗ୍ନର ଯେ, । ଯଥା ସଂକ୍ଷେପରେ କହିଲା ଗୀତରେ
ବଦ୍ୟାଭୂଷଣ ଏ ଗିର ଯେ । ୧୪ ।

---

## ନବମ ଛାନ୍ଦ ।— ରାଗ ଦେଶାକ୍ଷ ।

ଲଗ୍ନାଷ୍ଟମେ ସୂର୍ଯ୍ୟ ଥାଇ ରାହୁ ଦୃଷ୍ଟି ଯେବେ ତାଠାରେ ପଡ଼ଇ ।
କିବା ଶନି ତାହା ସଙ୍ଗେ ଥାଇ ଅବା ଉଚ୍ଚେ ତାଙ୍କୁ ଦେଖୁଥାଇ ।
ହେ ନରେ । ହେଲେ ଏ ଯୋଗ ଏଥି ଜନ୍ମରେ ।
ବଞ୍ଚେ ସହସ୍ରେ ମାସ ପୁଞ୍ଜରେ ହେ । ୧ ।
ଷଷ୍ଠରେ ଅଷ୍ଟମାଧିପ ରହି ରାହୁ ଯେବେ ଦେଖିଥାଇ ତାଙ୍କୁ ।
ଏଯୋଗେ ଜନ୍ମିଲେ ସାତଦିନ ବଳି ନ ଜୀଅଇ ବାଳକକୁ ।
ହେ ନରେ । ସପ୍ତପତି ପାପସଙ୍ଗତରେ ।
ଥାଇ ଯେବେ ସେ ମୋକ୍ଷ ସ୍ଥାନରେ । ୨ ।
ଶୁଭଗ୍ରହ ତାଙ୍କୁ ଦେଖୁଥିଲେ ତେବେ ସାତ ରାତି ନ ଜୀଅଇ ।
ଜ୍ୟୋତିଷକାରଙ୍କ ବଚନ ଏମନ୍ତ ଜ୍ୟୋତିଷରେ ଶୁଣି ଥାଇ ।
ହେ ନରେ । କହୁ ଥାଇଁ ଟି ଏଥି ଉତ୍ତରେ ହେ ।
ବୁଝ ବନ୍ଧୁର ଧୀର ଚିତ୍ତରେ ହେ । ୩ ।
ସାତପତି ଲଗ୍ନନାଥ ସଙ୍ଗେ ହୋଇ ବ୍ୟୟସ୍ଥାନେ ରହି ଥାଇ ।
କିବା ଲଗ୍ନପତି ସପ୍ତମପତିଙ୍କ ଉଚ୍ଚେ ଉଚ୍ଚେ ଦେଖୁଥାଇ।
ହେ ନରେ । ହୋଏ ବପତ୍ତି ବର୍ଷ ମଧ୍ୟରେ ।
ନୋହେ ଏକଥା ଅନ୍ୟ ଯୋଗରେ ହେ । ୪ ।

କର୍ମାଧିପ ସଙ୍ଗେ ନଧନାଧିପତି ଲାଭପଦରେ ରହିଁ ଥାନ୍ତି ।
ଲଗ୍ନ ପଞ୍ଚମରେ ଗୁରୁ ଶୁକ୍ର ଦୁହେଁ ଯେବେ କରଥାନ୍ତି ସ୍ଥିତି ।
ହେ ଜନେ । ଶତାୟୁଷ ହୋନ୍ତି ପ୍ରାଣିମାନେ ।
ନୋହେ ଆନ ଏହା ପେନ ମନେ ହେ । ୫ ।
* ମୋକ୍ଷାଧିପ ସଙ୍ଗେ ଅଠନାଥ ଯେବେ କେନ୍ଦ୍ର ସ୍ଥାନେ ରହିଥାନ୍ତି ।
ଶତାୟୁ କରଇ ଏଯୋଗେ ଜନ୍ମିଲା ଜନକୁ ସନ୍ଦେହ ନାହିଁ ।
ହେ ନରେ । ଷଷ୍ଠନାଥ କବା ଲଗ୍ନପରେ ।
କବା ଲଭେ ଦ ଶୁଭସଙ୍ଗରେ । ୬ ।
ଏଯୋଗେ ଜନ୍ମିଲେ ଅଶୀବର୍ଷ ଜୀଏ ନୁହଇ ଏକଥା ଆନ ।
ସାତ ନବ ଛଅ ଅଠ ପଦରେ ସ୍ଥିତ କଲେ ଏକଏରେ ଯେନ ।
ହେ ନରେ । ଜାତ ଶିଶୁ ସାତ ସମୟରେ ।
ଗତ କରେ ଶମନ ପାଶରେ ହେ । ୭ ।
ଅଷ୍ଟମାଧିପତି ଖଳଗ୍ରହସଙ୍ଗେ ଯେବେ ଥାଇ ଲାଭ ପଦରେ ।
କବା ଖଳଗ୍ରହ ଦେଖୁଥାନ୍ତି ଯେବେ ତେବେ ଅଠ ବରଷରେ ।
ହେ ନରେ । ନାଶ ହୋଏ ସେ ଶିଶୁ ସତ୍ୱରେ ହେ ।
କହୁଛନ୍ତି ଏହା କେରଳରେ ହେ । ୮ ।
ନବମ ଅଷ୍ଟମ ଦୁଇ ନାଥ ଯେବେ ଦଶମ ସ୍ଥାନରେ ଥାନ୍ତି ।
ସନ୍ତୁ ଦୃଷ୍ଟି ଯେବେ ସେ ଦୁହିଙ୍କଠାରେ କରୁଥାଇ ସ୍ୱଚ୍ଛେ ଗତି ।
ହେ ନରେ । ତେବେ ମାରଇ ଅଠ ବର୍ଷରେ ।
ନୋହେ ଏକଥା ଆନ୍ନା ସତ୍ୟରେ ହେ । ୯ ।
ମୋକ୍ଷାଧିପ ଯେବେ ଲଗ୍ନପତି ସଙ୍ଗେ ହୋଇଥାଇ ନୀଚଗତ ।
ଭାଗ୍ୟନାଥ ଦେଖୁ ଥିଲେହେଁ ବଂଶତ ବରଷେ କରେ ବପତ୍ତି ।

---

* ନବମାଧିପ ।

ହେ ନରେ । ଲଗ୍ନ ପଢ ସ୍ୱାମୀ ପଢ ମେଳେ ହେ ।
ଆନ୍ତ୍ର ଯେବେ ଶତ୍ରୁ ଦୃଷ୍ଟି ସ୍ଥଳେ ହେ । ୧୦ ।
କର୍ମ ସ୍ଥାନେ ବାସ କରଥିଲେ ଦଶ ବରଷେ କରଇ ନାଶ ।
ଲଗ୍ନପଢ ପାପଗ୍ରହ ସଙ୍ଗ ପାଇଁ ଶତ୍ରୁ ସଙ୍ଗେ କଲେ ବାସ ।
ହେ ନରେ । ଶନି ଦୃଷ୍ଟି ଥିଲେ ଭାଙ୍କଠାରେ ।
ମାରେ ବରଷକେ ଛାଲୁ ଖରେ ହେ । ୧୧ ॥

ଲଗ୍ନପଢ ପାପସଙ୍ଗଢଲୁ ପାଇ ନବମପଢ ସଙ୍ଗରେ ।
ଏକ ସ୍ଥାନେ ଥିଲେ ମାରଇ ନିଷ୍ଟସ୍ୱେ ଗଷ୍ଟମ ବରଷଠାରେ ।
ହେ ନରେ । ଶଷ୍ଟ ଭଙ୍ଗ ଥିଲେ ପୂର୍ବକର୍ମରେ ହେ ।
କଷ୍ଟ ଦଅଇ ବହୁ ପ୍ରକାରେ ହେ । ୧୨ ॥

କର୍ମସ୍ୱାମି ସଙ୍ଗେ ଲଗ୍ନ ପ୍ରଭୁ ଯେବେ ପଞ୍ଚମ ଘରରେ ଥାଇ ।
ପାଞ୍ଚ ବରଷରେ ନିଷ୍ଟସ୍ୱେ ମାରଇ ଏକଥା ମିଥ୍ୟା ନୁହଇ ।
ହେ ନରେ । କର ବିବେକ ଧୀର ଚିତ୍ତରେ ହେ ।
କହେ କହିଛନ୍ତି ଜ୍ୟୋତିଷରେ ହେ । ୧୩ ॥

ଲଗ୍ନପତି ହୀନବଳ ହୋଇ ଏବା ଅଷ୍ଟମ ଘରରେ ଥିଲେ ।
ତ ଏବା କେନ୍ଦ୍ରରେ ଥିଲେଃ ବତିଶ ବରଷେ ମାରଇ ହେଳେ
ହେ ନରେ । ଅଠ ଦଶ ପ୍ରଭୁ ଏକମେଳେ ହେ ।
ପାପଗ୍ରହ ସଙ୍ଗେ ବସି ଥିଲେ ହେ । ୧୪ ॥

ଏବା ପାପ ଦୃଷ୍ଟି ସମ୍ପକରେ ଥିଲେ ବତିଶ ବରଷେ ମାରେ ।
ପାପସଙ୍ଗତରେ ଅଷ୍ଟମନାଥଙ୍କ ଥିବାରୁ ଅଳ୍ପାୟୁ କରେ ।
ହେ ନରେ । ଯେବେ ଲଗ୍ନପତି ତା ସଙ୍ଗରେ ।
ଥାଇ ଅତି କ୍ଷୀଣାୟୁଷ କରେ ହେ । ୧୫ ॥

ନବମ୍ପେ ଏବା ମିତ୍ରଭବନରେ ଶନି ଓଚ୍ଚବଳେ ଥାଇ ।

ଅଷ୍ଟମ ନାଥ ତା ନିଜ ଘରେ ରହି ଯେବେ ତାକୁ ଦେଖୁ ଥାଇ ।
ହେ ନରେ । ତେବେ ଗଣି ଦୀର୍ଘାୟୁଷ କରେ ।
ଏହା କହନ୍ତି କେରଳରେ ହେ । ୧୬ ॥
ଲଗ୍ନପତି ଓଚ୍ଚବନ୍ତ ହୋଇ ଯେବେ ଶୁଭଗ୍ରହେ କେନ୍ଦ୍ରେ ଥାନ୍ତି ।
ସେହି ଶୁଭମାନେ ସମ୍ପୂର୍ଣ୍ଣରେ ଯେବେ କେନ୍ଦ୍ରପତିଙ୍କି ଦେଖନ୍ତି ।
ହେ ନରେ । ପୂର୍ଣ୍ଣ ଆୟୁଷ ଦଅନ୍ତି ଖରେ ।
ଶୁଭେ ବଖାନ୍ତି ମର୍ତ୍ତ୍ୟଲୋକରେ । ୧୭ ।
ଶୁଭଗ୍ରହମାନେ ଯେଝାଘରେ ଥାଇ ଚନ୍ଦ୍ର ଥିଲେ ଭୃଙ୍ଗ ମେଳେ ।
ଲଗ୍ନପତି ନିଜ ଓଚ୍ଚଲଗ୍ନେ ଥିଲେ ଷାଠିଏବରଷେ ମାରେ ।
ହେ ନରେ । ଶୁଭେ ଥିଲେ ମୂଳ ତ୍ରିକୋଣରେ ।
ବୃହସ୍ପତି ଥାଇ ଭୃଙ୍ଗଘରେ । ୧୮ ।
ଲଗ୍ନପତି ନିଜ ଓଚ୍ଚେ ଥିଲେ ଅଶୀବରଷେ କରଇ ନାଶ ।
ଏଥିଅନ୍ତେ ଅନବଧା ଶୁଣ ନରେ କହୁଥାଇଁ ପରକାଶ ।
ହେ ଜନେ । ବୁଧ ଓଚ୍ଚେ ଥିଲେ କେନ୍ଦ୍ରସ୍ଥାନେ ।
କେହି ଗ୍ରହ ନ ଥିଲେ ନିଧନେ । ୧୯ ।
ଶତଶବରଷ ବଞ୍ଚଇ ସେ ନର ଏ କଥା ନୁହଇ ଆନ ।
ଯେବେହଁ ବୁଧର ସେହି କେନ୍ଦ୍ରଗୃହ ହୋଇ ଥାଇ ନିଜ ସ୍ଥାନ ।
ହେ ଜନେ । ତାକୁ ଦେଖୁଥାନ୍ତି ଶୁଭମାନେ ।
ମୃତ୍ୟୁ ମିଳିଶେ ଘଟଇ ଘନେ । ୨୦ ।
ଅପଣା ଭୃଙ୍ଗରେ କବା ଏକାଦଶେ ଶଶୀ ଯେବେ ବସିଥାଇ ।
ଶୁଭଗ୍ରହ ସପତମେ ଥିଲେ ଜାଣ ଷାଠିଏବର୍ଷେ ମାରଇ ।
ହେ ଜନେ । ଧନେ ଥାନ୍ତି ଯେବେ ଶୁଭମାନେ ।
ଜୀବ ବଛାରେ କ ଲଗ୍ନସ୍ଥାନେ । ୨୧ ।
ଶ୍ୱେତଲ ଅଶୀବର୍ଷ ଅୟୁଷ ହୁଅଇ ଜାତକାଳଂକାରେ ବୋଲେ ।

ଅଠପତି ତବା ଧର୍ମପତି ଖଳଗ୍ରହଦୃଷ୍ଟି ପରେ ଥିଲେ ।
ହେ ନରେ । ଷଷ୍ଠାଧିପ ଥିଲେ ଜଘନରେ ।
ମୃତ୍ୟୁ ହୋଏ ବଯ୍ୟାଶୀବର୍ଷରେ । ୨୨ ॥
ଏପରକେ କେତେ ଅପୂର୍ବ ବଧାନ ବୋଲିଛନ୍ତି ଗ୍ରନ୍ଥକାରେ ।
ଲେଖିଲେ ଅନେକ ପୁସ୍ତକ ହୋଇବ କେ ଅବା ତା ବର୍ଣ୍ଣି ପାରେ ।
ହେ ନରେ । କିଛି କହିଲି ଦେଶଭାଷାରେ ।
ଶିଶୁମାନଙ୍କ ବୋଧଭାବରେ । ୨୩ ॥
ସିଂହରେ ମିଥୁନେ କୁମ୍ଭରେ କାର୍କଟେ ଯେବେ ପାପଗ୍ରହେ ଥାନ୍ତି ।
ତେବେ ବଜ୍ରପାତେ ମରଣ ଲଭଇ ଅବଶ୍ୟନ୍ତି ସେହୁ ବ୍ୟକ୍ତି ।
ହେ ନରେ । ଚନ୍ଦ୍ର ଥିଲେ ସୂର୍ଯ୍ୟଙ୍କର ଘରେ ।
ରାହୁ ଥାଏ କି ତାଙ୍କ ସଙ୍ଗରେ । ୨୪ ॥
ଲଗ୍ନ ଅଷ୍ଟମରେ ତବା ସପ୍ତମରେ ଥିଲେ ପଶୁଦ୍ୱାରା ନାଶ ।
ହୁଅଇ ଅବଶ୍ୟ ଏ କଥାନ୍ତି ଆନ ନୋହେ ଏ ଜ୍ୟୋତିଷଭାଷ ।
ହେ ନରେ । ଯେବେ ବୁଧ ଥାଇ ଶତ୍ରୁଘରେ ।
ଶତ୍ରୁଦୃଷ୍ଟେ ଶତ୍ରୁ ସଙ୍ଗତରେ । ୨୪ ॥
ଷଷ୍ଠେ ବା ଅଷ୍ଟମେ ନଶାପତି ଥିଲେ ଜଳଜନ୍ତୁଯୋଗେ ନାଶ ।
ଘଟଇ ଶୁଣ ହେ ଜନେ କହୁଥାଇ ଆନ କଥା ପରକାଶ ।
ହେ ନରେ । ନାସ୍ତି କୋଷ୍ଠି ବିସ୍ତୃତ ବର୍ଣ୍ଣରେ ।
ଶୁଭ ଅଶୁଭ ଫଳ ମିଶ୍ରରେ । ୨୫ ॥
ଲଗ୍ନର କି ଅବା ଚନ୍ଦ୍ରର ସପ୍ତମେ ଯେବେ ଭୂମିସୁତ ଥାଇ ।
ତେବେ ସେ ନାରୀର ବାଳୁତକାଳରୁ ବିଧବା ନଷ୍ଟେ କରାଇ ।
ହେ ନରେ । ରବି ଥିବେ ଲଗ୍ନ ସପ୍ତମରେ ।
ଘଟଇ ଯୌତେ ସେ କନ୍ୟାକୁ ଖରେ । ୨୬ ॥
ଲଗ୍ନେ ଦୁଇପାପ କି ଅବା ତ୍ରିପାପ ଥିଲେ ଜାଣ ହେଉ କର ।

ବିଧବା ହୁଅଇ ଅବଶ୍ୟ ପାବକସମାନ ହୋଇଲେ ନାରୀ ।
ହେ ନରେ । ମୀନ ଧନୁ କୁମ୍ଭ ମକରରେ ।
ଯେବେ ମଙ୍ଗଳ ଥାଇ ଶୁଭରେ । ୨୭ ।
ଏ ଯୋଗେ ପୁରୁଷ ଜନ୍ମିଲେଟି ରାଜା ସମାନରେ ଭୋଗ ପାଇ ।
ନାରୀ ଜାତ ହେଲେ ପତିବ୍ରତା ହୋଇ ଉତ୍ତମକାନ୍ତ ଲଭଇ ।
ହେ ନରେ । ବନ୍ଧୁଘରେ ସୁଖଭୋଗ କରେ ।
କେବେ ବିରସ ନୋହେ ମନରେ । ୨୮ ।
ଚନ୍ଦ୍ର ଅଷ୍ଟମରେ ମଙ୍ଗଳ ରାହୁର ଶନଶ୍ଚର ଯେବେ ଆନ୍ତ ।
ସପ୍ତମରେ ଶୁକ୍ର କିବା ପାପ ଥିଲେ ବିନାଶ ହୁଅଇ ପତି ।
ହେ ନରେ । ଶୁଭଗ୍ରହ ଥିଲେ ସପ୍ତମରେ ।
ରାଜା ତୁଲ୍ୟ ସୁଖୀ ପତି କରେ । ୨୯ ।
ମଙ୍ଗଳ ରାହୁର ଦୁହିଙ୍କ ମଧ୍ୟରେ ଯେବେ ଥାଇ ନିଶାକର ।
ଅପତ୍ୟ ବିନାଶ ହୋଏ ଦୁର୍ଗାସମ ଯୋଗ ଥାଉ ସେ ନାରୀର ।
ହେ ନରେ । ପାପ ଦୁଇ ଜନ ସପ୍ତମରେ ।
ବେଶ୍ୟା କୁଳଟା ବିଧବା କରେ । ୩୦ ।
ସେହିରୂପେ ଲଗ୍ନ ସପ୍ତମରେ ଶୁଭଗ୍ରହ ଦୁଇ ଜନ ଥିଲେ ।
ରାଜା ତୁଲ୍ୟ ଧନୀ ଅଶେଷ ଗୁଣରେ ଯୁକ୍ତ ହୋଇ ପତି ମିଳେ ।
ହେ ନରେ । ଜୀବ ଥିଲେ କେନ୍ଦ୍ର ତ୍ରିକୋଣରେ ।
ପତି ଧନ ସୁତ ପୂର୍ଣ୍ଣ କରେ । ୩୧ ।
ଏପରି ଅନେକ ଯୋଗଫଳ ଅଛି କେ ତାହା ପାରିବ କହି ।
ମୁଁ ମନ୍ଦବୁଦ୍ଧି ବା କାହୁଁ ତା ଜାଣିବ ଋଷିବର୍ଗ ମୂକ ଯହିଁ ।
ହେ ଛଳେ । ବିଦ୍ୟାଭୂଷଣ କହେ ବଚନେ ।
ଗୁଣୀଗଣ ବୁଝ ଧୀରମନେ । ୩୨ ।

---

## ୧୦ ମ ଛନ୍ଦ ।

### ରାଗ ।— ଅଷାଢ଼ଶୁକ୍ଳ ।

ବୁଧ ଗୁରୁ ସଙ୍ଗତେ ବିଦ୍ୟାଗଣ । ଦ୍ୱିକସ୍ଥାନରେ କରଥିଲେ ବାସ ।
ମୂର୍ଖ କରନ୍ତି ଜନଙ୍କୁ ଅବଶ୍ୟ । ସେମାନେ ଧର୍ମ କେନ୍ଦ୍ର ନଜ ବାସ ।
ଥିଲେ ବିଦ୍ୟାବନ୍ତ । ଉତ୍ତମେ କରନ୍ତି ଶୁଣ ପଣ୍ଡିତ ।୧॥
ତ୍ରିକେ ଥିଲେ ଜୀବ ଓ ବାକ୍ୟେଶ୍ୱର । ନର ନୁହଇ ବାକ୍ୟରେ ଚତୁର ।
ବୃହସ୍ପତିଙ୍କଠାରୁ ସୁତପତି । ଯେବେ ହୋଇଥାଇ ପଞ୍ଚମେ ସ୍ଥିତ ।
ତବା ଲଗ୍ନ ସୁତ । ଭାଗ୍ୟନାଥମାନେ ହୋଇ ପ୍ରଶସ୍ତ ।୨॥
ଥାନ୍ତି ତୃତୀୟ ଷଷ୍ଠ ଏକାଦଶରେ । ତେବେ ଅପୁତ୍ରିକ ହୁଅନ୍ତି ନରେ
କାଳକ୍ଷେପେ ବା ହୋଏ ଶୁଭଙ୍କର । ସୁତେ କବା କର୍କଟେ ନିଶାକର ।
ଥିଲେ ବହୁ ସୁତ । ସୁତା ହୁଅନ୍ତି ନୁହଇ ଏ ବ୍ୟର୍ଥ ।୩॥
ସୁତସ୍ଥାନରେ ଥାଇ ବୃହସ୍ପତି । ତହିଁ ପଞ୍ଚମେ ପାପଗ୍ରହ ସ୍ଥିତି ।
ଏ ଯୋଗେ ସୁତହୀନ ହୋନ୍ତି ନରେ । ପାପ ବର୍ଗେ ଥିଲେ ଏହିପ୍ରକାରେ
ବୃଷେ ବା ମିଥୁନେ । ଶନି ଥିଲେ ଏକପୁତ୍ର ଜନମେ ।୪॥
କୁମ୍ଭଲଗ୍ନେ ଯେବେ ଶନି ରହଇ । ପଞ୍ଚପୁତ୍ର ହୋନ୍ତି କୁତର୍କ ବହି ।
ଯେବେ ସେ ମକରଲଗ୍ନରେ ଥାଇ । ଏକସୁତ କି ସୁତା ଜାତ ହୋଇ
ସିଂହଲଗ୍ନେ ଅର । ଥିଲେ ଏକପୁତ୍ର ହୋଏ ନିକର ।୫॥
ଲଗ୍ନ ତୃତୀୟେ ଚନ୍ଦ୍ର ବୁଧ କାବ୍ୟ । ତିନିଗ୍ରହର ଏକ ଯେବେ ଥିବ ।
ତିନିଦୁହିତା କରନ୍ତି ନିଶ୍ଚିତ । ଗୁରୁ ଥିଲେ କେବଳ ନୋହେ ସୁତ ।
ମେଷ ବୃଷେ ତମ । କେତୁ ଥିଲେ ପଞ୍ଚପୁତ୍ର ଜନମ ।୬॥
କର୍କଡ଼ାରେ ଥିଲେ ଏପରି ଫଳ । ଦିଅନ୍ତି ବଳମ ହୁଏ କେବଳ ।
ପାପ ବା ବୃହସ୍ପତି ସୁତପରେ । ଚନ୍ଦ୍ର ପଞ୍ଚମେ ବବା ଅଷ୍ଟମରେ ।

ଥିଲେ ଯେ ଉରଣ । ବରଷେ ବନାଡାର ଗର୍ଭବାସ । ୬ ।
ଅନଯୋଗ ଏବେ ଶୁଣ ସୁଜନେ । କହୁ ଅଛୁ ଗ୍ରନ୍ଥ ବୁଝି ଯତନେ ।
ସେହୁଅର ସୂତଭାବ ବର୍ତ୍ତର । ଏହା କେବେ ଅନ ନୋହେ ହେ ଧୀର
ଶୁଭଦୃଷ୍ଟିଥିଲେ । ଯେବେ ଖଳ ଥାନ୍ତି ପଞ୍ଚମସ୍ଥାନେ । ୭ ॥
ତେବେ ବରଷ ବଳମ୍ବ ହୁଅଇ । ଧର୍ମ ଦର୍ଶିଲେ ଅନପେ ଫଳଇ
ପୁତ୍ର ପତି ଶୁଦ୍ଧ ଖେଚର ମେଳେ । ଭୁଙ୍ଗେ କେନ୍ଦ୍ରେ କିବା ତ୍ରିକୋଣେ
ଥିଲେ ।
ପାଞ୍ଚ କିବା ଅଷ୍ଟ । ସୁତ ଜନ୍ମ କହନ୍ତି ଯେ ଗରିଷ୍ଠ । ୮ ॥
ମୋକ୍ଷାର୍ଥପତି ସଙ୍ଗେ ପୁତ୍ରନାଥ । ଯେବେ ହୋନ୍ତି ଏକାଦଶରେ ସ୍ଥିତ
ଅଠପୁତ୍ର ଏକପୁତ୍ରୀ ହୁଅନ୍ତି । କିବା ନୀଚଦୃଷ୍ଟେ ପୁତ୍ରାଧିପତି ।
କି ନୀଚ ସଙ୍ଗରେ । ଥାଏ ବହୁ ଦେଖୁଥାଏ ରଙ୍ଗରେ । ୯ ॥
ଏଥୁଁ ଜାଣିବ ହେବେ ବନ୍ଧ୍ୟାପୁତ୍ର । ଏପର ନାନା ବଚନ ଉକତ ।
ହେତୁ ତାହା ଅନ୍ୟ କର କହିବ । କେବଳ ଏହା ଜାଣନ୍ତି ଯେ ଶିବ ।
ଏବେ ଅନ କଥା । ଶୁଣ ଜନେ ଜ୍ୟୋତିଷ ନୋହେ ବୃଥା
ଜାୟାସ୍ଥାନର କହିବା ବର୍ତ୍ତର । ସୁଜନେ ଏଥି ମନ ଯୋଗକର ।
ସପ୍ତମପତି ଯେବେ ଶୁଭ ସଙ୍ଗେ । ବସିଥାଇ ସପ୍ତମଗୃହେ ରଙ୍ଗେ ।
ତେତିକ ବିବାହ । କହନ୍ତି ଏଥିରେ ନାହିଁ ସନ୍ଦେହ । ୧୧ ॥
ଲଗ୍ନପତି କିବା ଜାୟାନାଥ । ଶୁକ୍ରଗ୍ରହକୁ ଯେତେ ସଙ୍ଗତ ।
ଷଷ୍ଠ ଅଷ୍ଟମ ଦ୍ୱାଦଶରେ ଥାଇ । ଯେତେ ପାପଗ୍ରହ ସଙ୍ଗକୁ ପାଇ ।
ତେତିକ ବିବାହ । କହନ୍ତି ଏଥିରେ ନାହିଁ ସନ୍ଦେହ । ୧୨ ॥
ସପ୍ତମଗୃହେ ଅଧିକାର ପାଇଁ । ଉଚ୍ଚେ ବା ନିଜ କ୍ଷେତ୍ରେ ରହିଥାଇ
ଘାତ ବିବାହ ଏ ଯୋଗେ ହୁଅଇ । ପଞ୍ଚମନାଥ ଜାୟାପତି ଦୁଇ ।
ଛୁଡାସ୍ଥାୟିପତି । ଦୃଷ୍ଟିରେ ଲଗ୍ନସ୍ଥଳେ କଲେ ସ୍ଥିତି । ୧୩ ॥

ଜାଣ ପଞ୍ଚମବାଦକୁ କହନ୍ତି । ଶୁକ୍ର ହୋଇଥାଇ ସପ୍ତମପତି ।
ପଞ୍ଚମପତି ତା ସଙ୍ଗରେ ଥିବ । ମୋକ୍ଷକାରକ ତାକୁ ଦେଖୁଥିବ ।
ପଞ୍ଚମ ବବାଦ । ଏଥିରେ ନ୍ଧ୍ତର ନାହିଁ ସନ୍ଦେହ । ୧୪ ।
ଧନପତି ସଙ୍ଗେ କଳତ୍ରପତି । ଯେବେ ଲଗ୍ନେ କ୍ତଥାଇ ବସତି
ତାକୁ ଦେଖୁଥିଲେ ତେବେ ସେ ନାରୀ । ଅବଶ୍ୟ ନ୍ଧ୍ତର କଳହକାରୀ
ନୁହଇ ଏ ଆନ । ପାଠକବର୍ଗେ ଶୁଣ ଦେଇ ମନ । ୧୫ ।।
ଜାୟାପତି ଥିବ ସପ୍ତମଘରେ । ଯୁକ୍ତ ହୋଇଥିବ ପାପ ଖେଚରେ
ଏ ଯୋଗେ ବଟପା ନଜ ରମଣୀ । ଅବଶ୍ୟ ହୁଅଇ ଜ୍ୟୋତିଷବାଣୀ
ଏଥର ବୋଲଇ । ଶୁଣ ଜନେ ମୁଁ ପ୍ରକାଶ କରଇ । ୧୬ ।।
ଅଟେ ଜ୍ୟୋତିଷପଣ୍ଡିତ ନକର । ଏହାକୁ ଦେଖି ମୋ ଦୋଷ ନ ଧର
ବାଳକମାନେ ଅଳପ କ୍ଲେଶରେ । ଜାଣିବେ କଞ୍ଚିତ ଫଳ ଅଶରେ
ଏ ଗୀତ ପ୍ରକାଶ । କଲି ଏଣୁ କ୍ଷମା କର ମୋ ଦୋଷ । ୧୭ ।।
ମନ୍ମଥାବ୍ଦ ବାରଶ ଚୌରାଶି । ସାଲ ବୃଷମାସ ଜାଣ ବଶେଷି ।
ଜ୍ୟେଷ୍ଠ ମଳ କୃଷ୍ଣପକ୍ଷରେ ଶେଷ । କଲି ଯାହା ମୋତେ ହୋଇଲା ଦୃଗ୍ୟ
ପରଚୟ ମୋର । ଦେଉଛି ପାଠକେ ମନେ ବଚାର । ୧୮
ଓଡଶା ମଧରେ ଏକାମ୍ରବନ । ତହିଁ ମଧେ ପୁନରପଦା ଗ୍ରାମ ।
ତହିଁ ନବାସୀ ରଘୁନାଥ ନନ୍ଦ । ତାଙ୍କ ସାନପୁତ୍ର ମୁଁ ବଡ଼ ମନ୍ଦ ।
କପିଳେଶ ନାମ । ମୋହର କହିଲ ଶୁଣ ଉତ୍ତମ । ୧୯ ।।

ସମାପ୍ତଃ ।

---